# ଜାତି ନିର୍ମାତାଙ୍କ ଜୀବନ-ଆଲେଖ୍ୟ

ତୃତୀୟଭାଗ - ୨ୟ ଖଣ୍ଡ

[ ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ଓ
ଶ୍ରୀ ଶଶିଭୂଷଣ ରଥଙ୍କ ଜୀବନାଲେଖ୍ୟ । ]

"ନେତୃସ୍ଥାନୀୟ ବ୍ୟକ୍ତି ଓ ସାଧାରଣଲୋକ ଜାତି କାର୍ଯ୍ୟରେ ଯୋଗଦେଲେହିଁ ଜାତିର ଧନ, ମାନ, ଯଶ, ସାହିତ୍ୟ, ସଂସ୍କୃତି, କଳା ଓ କୀର୍ତ୍ତି ବୃଦ୍ଧି-ପାଏ । ନେତୃ-ସ୍ଥାନୀୟ ବ୍ୟକ୍ତି ଆଲୋକ-ବର୍ତ୍ତିକା ଧରି ଆଗରେ ଚାଲିଲେ, ପଛରେ ତାଙ୍କ ସହିତ ଅଗଣିତ ବ୍ୟକ୍ତି ଯୋଗଦିଅନ୍ତି । ତାହାଦ୍ୱାରା କାର୍ଯ୍ୟ ସିଦ୍ଧି ହୁଏ ।"

— ଡକ୍ଟର୍ ବିଦ୍ୟାଧର ମିଶ୍ର

# ଜାତି ନିର୍ମାତାଙ୍କ ଜୀବନ-ଆଲେଖ୍ୟ

[ ତୃତୀୟ ଭାଗ - ୨ୟ ଖଣ୍ଡ ]

ଡକ୍ଟର୍ ବିଦ୍ୟାଧର ମିଶ୍ର
ପୂର୍ବତନ କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ

ଗ୍ରନ୍ଥମନ୍ଦିର

ପ୍ରକାଶକ :
ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର**, ବିନୋଦବିହାରୀ, କଟକ-୨

ମୁଦ୍ରକ :
ତପନ କୁମାର ମହାପାତ୍ର
**ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟର୍ସ୍,**
ସୂତାହାଟ, କଟକ - ୧

ଡି.ଟି.ପି. :
**ଗ୍ରାଫ୍ ଏନ୍ ଗ୍ରାଫିକ୍ସ,** କଟକ - ୧

ପ୍ରଥମ ସଂସ୍କରଣ : ନଭେମ୍ବର ୨୦୦୧

ମୂଲ୍ୟ : ଟ. ୩୫/-

# ସୂଚିପତ୍ର


| ବିଷୟ | | ପୃଷ୍ଠା |
|---|---|---|
| ୧. | ଓଡ଼ିଆଭାଷାର ମହାଭାଷ୍ୟକାର ଗୋପାଳଚନ୍ଦ୍ର ପ୍ରହରାଜ | ୧ |
| ୨. | ଉତ୍କଳପ୍ରେମୀ ଭଞ୍ଜଭୂମିର ଜନନାୟକ ଶଶିଭୂଷଣ ରଥ | ୪୧ |


---

# ମୁଖବନ୍ଧ

ମୋ ଲିଖିତ 'ଜାତିନିର୍ମାତାଙ୍କ ଜୀବନ ଆଲେଖ୍ୟ'ର ପ୍ରଥମ ଓ ଦ୍ୱିତୀୟ ଭାଗ ପୂର୍ବରୁ ପ୍ରକାଶିତ ହୋଇଛି । ସେଥିରେ ସୂଚିତ ହୋଇଥିଲା ଯେ, ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗ ଏବଂ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବିଭିନ୍ନ ପ୍ରଦେଶରେ ବିକ୍ଷିପ୍ତ ଭାବରେ ରହିଥିବା ଓଡ଼ିଆଭାଷୀ ଅଞ୍ଚଳମାନଙ୍କୁ ଏକତ୍ର କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ଏବଂ ଓଡ଼ିଆମାନଙ୍କର ଭାଷା, ସଂସ୍କୃତି ଏବଂ ସର୍ବବିଧ ସ୍ୱାର୍ଥ ରକ୍ଷାକରିବା ନିମିତ୍ତ ନବଜାଗରଣ ଆନ୍ଦୋଳନକୁ ନେତୃତ୍ୱ ଦେଇଥିବା ଏବଂ ଆଧୁନିକ ଓଡ଼ିଆଜାତି ଗଠନରେ ବିଶେଷ ଅବଦାନ ଦେଇଥିବା ଓଡ଼ିଶାର ବରପୁତ୍ରମାନଙ୍କର ଜୀବନ ଓ କାର୍ଯ୍ୟ ବିଷୟରେ ଓଡ଼ିଶାର ବର୍ତ୍ତମାନର ସ୍କୁଲ୍‌କଲେଜର ଛାତ୍ରଛାତ୍ରୀ ଏବଂ ଜନସାଧାରଣଙ୍କ ଅବଗତି ନିମିତ୍ତ ସଂକ୍ଷେପରେ ଆଲୋଚନା କରିବା ଏ ପୁସ୍ତକର ଉଦ୍ଦେଶ୍ୟ । ପୁସ୍ତକର ପ୍ରଥମ ଭାଗରେ ଓଡ଼ିଶାର ଆଦି-ସାଂବାଦିକ କର୍ମବୀର ଗୌରୀଶଙ୍କର ରାୟ, ଆଦି ଗଳ୍ପ ଓ ଉପନ୍ୟାସ ଲେଖକ ବ୍ୟାସକବି ଫକୀରମୋହନ ସେନାପତି, ନବଜାଗରଣ ଆନ୍ଦୋଳନର ମୁଖ୍ୟ ନାୟକ ଉତ୍କଳଗୌରବ ମଧୁସୂଦନ ଦାସ, ଆଧୁନିକ ଓଡ଼ିଆ କାବ୍ୟକବିତାରେ ନୂତନ ଯୁଗସ୍ରଷ୍ଟା କବିବର ରାଧାନାଥ ରାୟ ଏବଂ ସ୍ୱଭାବ କବି ଗଙ୍ଗାଧର ମେହେରଙ୍କର ଜୀବନୀ ଓ ଅବଦାନ ବର୍ଣ୍ଣନା କରାଯାଇଥିଲା । ଦ୍ୱିତୀୟ ଭାଗରେ ସତ୍ୟବାଦୀ-ଯୁଗସ୍ରଷ୍ଟା ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଋଷିପ୍ରାଣ ଆଚାର୍ଯ୍ୟ ହରିହର ଦାସ, ଜ୍ଞାନସାଗର ପଣ୍ଡିତ ନୀଳକଣ୍ଠ ଦାସ, କବିପ୍ରାଣ ପଣ୍ଡିତ ଗୋଦାବରୀଶ ମିଶ୍ର, ଉତ୍କଳ-ହିତୈଷୀ ପାରଳାର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଏବଂ ଆଧୁନିକ ଓଡ଼ିଶାର ନିର୍ମାତା ଉତ୍କଳ ହରେକୃଷ୍ଣ ମହତାବଙ୍କ ଜୀବନୀ ଓ କାର୍ଯ୍ୟ ଆଲୋଚନା କରାଯାଇଥିଲା । ଏ ସମସ୍ତ ଐତିହାସିକ ପୁରୁଷମାନଙ୍କର ଦେଶପ୍ରେମ, ତ୍ୟାଗ, ଜନସେବା ଏବଂ ଓଡ଼ିଆଜାତିକୁ ଅବଦାନ ଉତ୍କଳରେ ସର୍ବଜନବିଦିତ ।

ପୁସ୍ତକର ଏହି ତୃତୀୟ ଭାଗରେ, ସେହି ନବଜାଗରଣ ଆନ୍ଦୋଳନକୁ ନେତୃତ୍ୱ ଦେଇଥିବା ଅନ୍ୟ ପାଞ୍ଚଜଣ ମନୀଷୀ– ଉତ୍କଳବିକ୍ରମାଦିତ୍ୟ ବାମଣ୍ଡାର ରାଜା ବାସୁଦେବ ସୁଢ଼ଳ ଦେବ, ଉତ୍କଳପ୍ରେମୀ ନୀଳମଣି ବିଦ୍ୟାରତ୍ନ, ମୟୂରଭଞ୍ଜର ମହାରାଜା ରାଜର୍ଷି ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓ, ଓଡ଼ିଆଭାଷାର ଭାଷ୍ୟକାର ଗୋପାଳ ଚନ୍ଦ୍ର ପ୍ରହରାଜ ଏବଂ ଓଡ଼ିଆ-ପ୍ରାଣ ଶଶିଭୂଷଣ ରଥଙ୍କର ଜୀବନୀ ଏବଂ ଓଡ଼ିଆଜାତିକୁ ସେମାନଙ୍କର ଅବଦାନ ଆଲୋଚିତ ହୋଇଛି ।

ବାମଣ୍ଡାର ରାଜା ବାସୁଦେବ ସୁଢ଼ଳ ଦେବ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଅନୁନ୍ନତ ବାମଣ୍ଡା ରାଜ୍ୟରେ ଆଧୁନିକ ଶାସନ ପ୍ରଣାଳୀ ପ୍ରବର୍ତ୍ତନ କରି ରାଜ୍ୟର ବହୁବିଧ

ଉନ୍ନତି କରିଥିଲେ । ସେ ନିଜେ ଜଣେ ବିଦ୍ୱାନ୍ ପଣ୍ଡିତ, ଉଚ୍ଚକୋଟିର କବି ଓ ଲେଖକ ଥିଲେ ଏବଂ ସମଗ୍ର ଓଡ଼ିଶାର ସାହିତ୍ୟ, ସଂସ୍କୃତି ଓ କଳାର ଉନ୍ନତି ପାଇଁ ବହୁ ଓଡ଼ିଆ କବି, ଲେଖକ, ଘପତି ଓ କଳାପ୍ରେମୀମାନଙ୍କୁ ବିଶେଷଭାବରେ ସାହାଯ୍ୟ ଓ ପ୍ରୋତ୍ସାହନ ଦେଉଥିଲେ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ସମ୍ବଲପୁର ଜିଲ୍ଲା ସମେତ ସମଗ୍ର ପଶ୍ଚିମ ଓଡ଼ିଶାରେ ଓଡ଼ିଆଭାଷାକୁ ରକ୍ଷାକରିବା ଉଦ୍ୟମରେ ତାଙ୍କର ଅବଦାନ ଅବିସ୍ମରଣୀୟ ।

ଉତ୍କଳପ୍ରେମୀ ନୀଳମଣି ବିଦ୍ୟାରତ୍ନ ଓଡ଼ିଶାର ଆଦି-ସାଂବାଦିକମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ । ତରୁଣ ଅବସ୍ଥାରୁ ଜୀବନର ଶେଷ ପର୍ଯ୍ୟନ୍ତ ସେ ସମ୍ବାଦପତ୍ର ଓ ସାହିତ୍ୟ-ମାଧ୍ୟମରେ ଓଡ଼ିଆଜାତିର ସ୍ୱାର୍ଥ ରକ୍ଷାକରିବା ଏବଂ ଓଡ଼ିଆଭାଷା ଓ ସାହିତ୍ୟର ଉନ୍ନତି କରିବା ପାଇଁ ସଂଗ୍ରାମ କରିଥିଲେ । ତାଙ୍କ ସମ୍ପାଦନାରେ ଦେବଗଡ଼ର 'ସମ୍ବଲପୁର ହିତୈଷିଣୀ' ପତ୍ରିକା ପଶ୍ଚିମ ଓଡ଼ିଶାରେ ଓଡ଼ିଆଭାଷାରକ୍ଷା ସଂଗ୍ରାମର ମୁଖପତ୍ରରୂପେ କାର୍ଯ୍ୟ କରୁଥିଲା ଏବଂ ଗଞ୍ଜାମ ଜିଲ୍ଲାର 'ପ୍ରଜାବନ୍ଧୁ' ଓ 'ଗଞ୍ଜାମ ଗୁଣଦର୍ପଣ' ପତ୍ରିକାମାନ ଦେଶମିଶ୍ରଣ ଆନ୍ଦୋଳନର ମୁଖପତ୍ର ହୋଇଥିଲେ । କବିବର ରାଧାନାଥ ରାୟ, ଗଙ୍ଗାଧର ମେହେର, ଫକୀରମୋହନ ସେନାପତି, ଚିନ୍ତାମଣି ମହାନ୍ତି, ନାରୀକବି ଅନ୍ନପୂର୍ଣ୍ଣା, ଶଶିଭୂଷଣ ରଥ, ପଣ୍ଡିତ ଗୋପବନ୍ଧୁ ଦାସ, ସାମନ୍ତ ଚନ୍ଦ୍ରଶେଖର ସିଂହ ପ୍ରଭୃତି ତତ୍କାଳୀନ ଉତ୍କଳର ବରେଣ୍ୟ କବି, ଲେଖକ, ସାଂବାଦିକ ଓ ପ୍ରତିଭାବାନ୍ ବ୍ୟକ୍ତିଙ୍କୁ ସେ ସାହାଯ୍ୟ ଓ ପ୍ରେରଣା ଦେଇଥିଲେ । ୧୯୦୩ ମସିହାରେ ଉତ୍କଳର ସବୁ ଅଞ୍ଚଳର ଲୋକଙ୍କୁ ନେଇ 'ଉତ୍କଳ ସମ୍ମିଳନୀ' ଗଠନ କରିବା ପାଇଁ ସେ ମଧୁବାବୁଙ୍କୁ ପ୍ରେରଣା ଦେଇଥିଲେ ।

ମୟୂରଭଞ୍ଜ ରାଜବଂଶର ଶ୍ରେଷ୍ଠ ପୁରୁଷ ରାଜର୍ଷି ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓ ତାଙ୍କର ଆଦର୍ଶ ଏବଂ ସୁଦକ୍ଷ ଶାସନଦ୍ୱାରା ମୟୂରଭଞ୍ଜ ରାଜ୍ୟର ସର୍ବାଙ୍ଗୀଣ ଉନ୍ନତି କରିଥିଲେ ଏବଂ ସମଗ୍ର ଉତ୍କଳରେ ଶିକ୍ଷା, ସାହିତ୍ୟ, ସଂସ୍କୃତି ଓ କଳାର ପ୍ରଗତି ପାଇଁ ବହୁକାର୍ଯ୍ୟ କରିଥିଲେ । ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ସେ ସଭାପତି ହୋଇଥିଲେ ଏବଂ ତାଙ୍କ ଜୀବନକାଳ ମଧ୍ୟରେ ଉତ୍କଳ ସମ୍ମିଳନୀର ଜଣେ ପ୍ରଧାନ ପୃଷ୍ଠପୋଷକ ଥିଲେ ।

ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜ ଓଡ଼ିଶାର ଦେଶମିଶ୍ରଣ ଆନ୍ଦୋଳନର ଜଣେ ତୁଙ୍ଗ ନେତା ଥିଲେ । ଫକୀରମୋହନଙ୍କ ପରେ ସେ ଓଡ଼ିଆ ଲୋକସାହିତ୍ୟ ଓ ବ୍ୟଙ୍ଗ-ସାହିତ୍ୟ ରଚନାକୁ ବିଶେଷ ଅବଦାନ ଦେଇଥିଲେ । ତାଙ୍କ ଦ୍ୱାରା ସଂକଳିତ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ଓଡ଼ିଆଭାଷାକୁ ତାଙ୍କର ଶ୍ରେଷ୍ଠ ଅବଦାନ । ତାଙ୍କ ଭାଷାକୋଷଠାରୁ ଅଧିକ ଶବ୍ଦବହୁଳ ଓ ଉପାଦେୟ ଅଭିଧାନ ଓଡ଼ିଆଭାଷାରେ ଆଜିପର୍ଯ୍ୟନ୍ତ ସଂକଳିତ ହୋଇନାହିଁ ।

ଓଡ଼ିଆପ୍ରାଣ ଶଶିଭୂଷଣ ରଥ ଓଡ଼ିଶାର ଆଦିସାଂବାଦିକଙ୍କ ମଧ୍ୟରେ ଅନ୍ୟତମ ଥିଲେ । ସେ ଓଡ଼ିଶାର ପ୍ରଥମ ଦୈନିକ ସମ୍ବାଦପତ୍ର 'ଆଶା' ପ୍ରତିଷ୍ଠା କରିଥିଲେ । ଦକ୍ଷିଣ ଓଡ଼ିଶାର ଗଞ୍ଜାମ ଓ କୋରାପୁଟ ଜିଲ୍ଲାମାନଙ୍କରେ ତେଲୁଗୁମାନଙ୍କର ପ୍ରଭାବ କ୍ଷୁଣ୍ଣ କରି ଓଡ଼ିଆମାନଙ୍କର

ପ୍ରାଧାନ୍ୟ ପ୍ରତିଷ୍ଠା କରିବାରେ ଏବଂ ସେ ଦୁଇଟି ଜିଲ୍ଲାର ଓଡ଼ିଶା ସହିତ ମିଶ୍ରଣ କାର୍ଯ୍ୟରେ ତାଙ୍କର ଅବଦାନ ଚିରସ୍ମରଣୀୟ ।

ଏହି ପୁସ୍ତକର ତିନିଗୋଟି ଭାଗରେ ୧୮୫୦ ମସିହାଠାରୁ ୧୯୫୦ ମସିହା ପର୍ଯ୍ୟନ୍ତ ଓଡ଼ିଶାର ପ୍ରଧାନ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ସମସ୍ୟାମାନ ଏବଂ ଓଡ଼ିଆଜାତିର ପୁନରୁତ୍ଥାନ ଏବଂ ପୁନର୍ଗଠନରେ ବିଶେଷ ଅବଦାନ ଦେଇଥିବା ଉପରୋକ୍ତ ଷୋହଳ ଜଣ ଉତ୍କଳର ବରପୁତ୍ରଙ୍କର ଜୀବନୀ ଓ କାର୍ଯ୍ୟ ଆଲୋଚିତ ହୋଇଛି । ସେମାନଙ୍କ ଜୀବନୀ ପର୍ଯ୍ୟାଲୋଚନାରୁ ଜଣାଯାଏ ଯେ, ସେମାନେ ଏ ରାଜ୍ୟରେ ଶିକ୍ଷା ପ୍ରସାର ଓ ସମାଜ ସଂସ୍କାର କରି ଏବଂ ସାହିତ୍ୟ ଓ ସମ୍ବାଦପତ୍ରମାଧ୍ୟମରେ ଜାତିର ସମସ୍ୟାମାନ ଲୋକଲୋଚନକୁ ଆଣି ଜାତିର ପୁନର୍ଗଠନ କରିବାକୁ ଉଦ୍ୟମ କରିଥିଲେ । ଏହି ଷୋହଳ ଜଣଙ୍କ ମଧ୍ୟରୁ ସମସ୍ତେ କବି ବା ଲେଖକ ବା ସାହିତ୍ୟ ଓ ସଂସ୍କୃତିର ପୃଷ୍ଠପୋଷକ ଥିଲେ । ଏମାନଙ୍କ ମଧ୍ୟରୁ ଏଗାର ଜଣ ବିଭିନ୍ନ ସମ୍ବାଦପତ୍ର ପ୍ରତିଷ୍ଠା କରି ସେଗୁଡ଼ିକର ସମ୍ପାଦକରୂପେ କାର୍ଯ୍ୟ କରୁଥିଲେ । ଓଡ଼ିଶାର ନବଯୁଗରେ ପ୍ରାୟ ସମସ୍ତ ସମ୍ବାଦପତ୍ର ଏହିମାନଙ୍କଦ୍ୱାରା ପ୍ରତିଷ୍ଠିତ ଓ ସମ୍ପାଦିତ ହୋଇଥିଲା । ଆଧୁନିକ ଯୁଗରେ ସବୁ ଦେଶରେ ଜାତୀୟ ସମସ୍ୟା ସମାଧାନ, ଜନଚେତନା ଜାଗରଣ ଓ ଜାତୀୟ ଚରିତ୍ରଗଠନରେ ଗଣମାଧମମାନଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଜାତିର ସାହିତ୍ୟ ଓ ଗଣମାଧମ ଜାତିନିର୍ମାତାଙ୍କ ଚିନ୍ତାଧାରା ପ୍ରକାଶ କରି ଜାତିକୁ ସର୍ବଦା ଜାଗ୍ରତ ଓ ସଚେତନ କରେ । ଜାତିର ପ୍ରଗତି ନିମିତ୍ତ ସେଗୁଡ଼ିକ ପ୍ରଧାନ ଆୟୁଧ ।

ଜାତିନିର୍ମାତା ପୁସ୍ତକର ତିନିଗୋଟିଯାକ ଭାଗରେ ସୂଚିତ ହୋଇଛି ଯେ, ଏ ପୁସ୍ତକର ସମସ୍ତ ତଥ୍ୟ ଅନ୍ୟ ବିଶିଷ୍ଟ ଲେଖକମାନଙ୍କଦ୍ୱାରା ଲିଖିତ ବା ସଂକଳିତ ପୁସ୍ତକମାନଙ୍କରୁ ସଂଗୃହୀତ ହୋଇଛି । ସେ ପୁସ୍ତକମାନଙ୍କର ଏବଂ ସେଗୁଡ଼ିକର ଲେଖକମାନଙ୍କର ନାମ ଏ ପୁସ୍ତକରେ ଉଲ୍ଲେଖ କରାଯାଇଛି । ମୁଁ ସେମାନଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି । ମୁଁ ଆଶା କରୁଛି ଯେ, ଓଡ଼ିଶାର ସ୍କୁଲ-କଲେଜର ଛାତ୍ରଛାତ୍ରୀ ଏବଂ ସାଧାରଣ ପାଠକବୃନ୍ଦ ଏ ପୁସ୍ତକରୁ ଓଡ଼ିଶାର ଊନବିଂଶ ଓ ବିଂଶ ଶତାବ୍ଦୀର ବିଭିନ୍ନ ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ସମସ୍ୟାମାନ ଏବଂ ସେଗୁଡ଼ିକର ସମାଧାନ ନିମିତ୍ତ ବିଶେଷ ଉଦ୍ୟମ କରିଥିବା ଓଡ଼ିଶାର ବରପୁତ୍ରମାନଙ୍କ ବିଷୟରେ ସମ୍ୟକ୍ ଜ୍ଞାନ ଲାଭ କରିପାରିବେ ।

ଶେଷରେ କଟକ ଗ୍ରନ୍ଥମନ୍ଦିରର ପ୍ରକାଶକ ଶ୍ରୀଯୁକ୍ତ ମନୋଜକୁମାର ମହାପାତ୍ର ଏ ପୁସ୍ତକର ତିନିଗୋଟିଯାକ ଭାଗ ପ୍ରକାଶକରିଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଅର୍ପଣ କରୁଛି ।

ବିଦ୍ୟାଧର ମିଶ୍ର



ଓଡ଼ିଆ ଭାଷାର ମହାଭାଷ୍ୟକାର
ଗୋପାଳଚନ୍ଦ୍ର ପ୍ରହରାଜ

# ଓଡ଼ିଆ ଭାଷାର ମହାଭାଷ୍ୟକାର
# ଗୋପାଳ ଚନ୍ଦ୍ର ପ୍ରହରାଜ

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଓଡ଼ିଆ ଜାତିର ନବଜାଗରଣ, ଦେଶମିଶ୍ରଣ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନର ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପ୍ରହରାଜ ଜଣେ ପ୍ରମୁଖ ନେତା ଥିଲେ । ସେ ଓଡ଼ିଆ ଭାଷାର ସର୍ବବୃହତ୍ ଏବଂ ସର୍ବଶ୍ରେଷ୍ଠ ଭାଷାକୋଷ ସଂକଳନ କରିଥିଲେ ଏବଂ ଓଡ଼ିଶାର ଲୋକସାହିତ୍ୟ ଓ ହାସ୍ୟରସାତ୍ମକ ବ୍ୟଙ୍ଗସାହିତ୍ୟକୁ ଅନବଦ୍ୟ ଅବଦାନ ଦେଇଥିଲେ । ଓଡ଼ିଶାର ସ୍ଥାପତ୍ୟ କଳାକ୍ଷେତ୍ରରେ କୋଣାର୍କ ମନ୍ଦିର ଯେପରି ଗୋଟିଏ ଅକ୍ଷୟ ଓ କାଳଜୟୀ କୀର୍ତ୍ତି, ପ୍ରହରାଜଙ୍କ ପ୍ରଣୀତ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ଓଡ଼ିଆଭାଷାର ଇତିହାସରେ ସେହିପରି ଏକ ଅକ୍ଷୟ ଓ କାଳଜୟୀ କୀର୍ତ୍ତି । ଓଡ଼ିଆଭାଷାର ଏହି ବିରାଟ ଅଭିଧାନ ସଂକଳନ ହେତୁ ଗୋପାଳ ଚନ୍ଦ୍ର ପ୍ରହରାଜ ଚିରକାଳ ଓଡ଼ିଶା ଇତିହାସରେ ଉଚ୍ଚ ସ୍ଥାନ ଅଧିକାର କରିଥିବେ ଏବଂ ଓଡ଼ିଆ ଜାତିର ଚିରସ୍ମରଣୀୟ ହୋଇ ରହିଥିବେ ।

**ବଂଶ-ପରମ୍ପରା ଓ ବାଲ୍ୟଜୀବନ –**

ଶ୍ରୀଯୁକ୍ତ ପ୍ରହରାଜ କଟକ ଜିଲ୍ଲାର କନ୍ଦରପୁର ନିକଟବର୍ତ୍ତୀ ସିଦ୍ଧେଶ୍ୱରପୁର ଗ୍ରାମରେ ୧୮୭୪ ମସିହା ସେପ୍ଟେମ୍ବର ମାସ ୨୭ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ନରସିଂହ ପ୍ରହରାଜ । ତାଙ୍କର ପୂର୍ବପୁରୁଷମାନେ ବୀରଗୋବିନ୍ଦପୁର ଶାସନର କାଣ୍ୱଶାଖାଧ୍ୟାୟୀ ହାରିତାସ ଗୋତ୍ରୀ ବ୍ରାହ୍ମଣ ଥିଲେ । ତାଙ୍କର ଚତୁର୍ଥ ପୂର୍ବପୁରୁଷ ସୁଦାମ ଆଚାର୍ଯ୍ୟ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ସିଦ୍ଧେଶ୍ୱରପୁରରେ ଶ୍ୟାମସୁନ୍ଦର ନନ୍ଦଙ୍କ ଘରଜ୍ୱାଇଁ ହୋଇ ଆସିଥିଲେ । ସୁଦାମଙ୍କ ପୁଅମାନଙ୍କ ମଧ୍ୟରୁ କିଣେଇ ଓ ଶ୍ରୀକର ସଂସ୍କୃତ ଓ ପାର୍ଶୀଭାଷାରେ ବିଦ୍ୱାନ୍ ଥିଲେ ଏବଂ ଶ୍ରୀକର ପୁରୀ ଗଜପତି ରାଜାଙ୍କଠାରୁ 'ପ୍ରହରାଜ' ଉପାଧି ଲାଭକରିଥିଲେ । ଶ୍ରୀକର ପ୍ରହରାଜ ମଧ୍ୟ କଟକରେ ଜଣେ ମୁକ୍ତାର ହୋଇଥିଲେ । କଟକ ଜିଲ୍ଲାର କୋଦଣ୍ଡ ପ୍ରଗଣାର ଜମିଦାର ଲାଟବନ୍ଦି ତାରିଖରେ ଇଂରେଜ ସରକାରଙ୍କ ପାଖରେ ଖଜଣା ଦାଖଲ କରି ନ ପାରିବାରୁ, ଶ୍ରୀକର ତାଙ୍କ ଭାଇ କିଣେଇଙ୍କ ନାମରେ ଜମିଦାରିର କିଛି ଅଂଶ କିଣିଥିଲେ; ପରେ ଦୁଇଭାଇ ବାଖରାବାଦ ପ୍ରଗଣାରେ ମଧ୍ୟ କେତେକ ଜମିଦାରି କିଣିଥିଲେ ।

ଶ୍ରୀକରଙ୍କ ପୁତ୍ର ଭାଗୀରଥି ନିଃସନ୍ତାନ ଥିବାରୁ ସେ ତାଙ୍କ ସାନଭାଇ ଦାମୋଦରଙ୍କ ପୁଅ ନରସିଂହଙ୍କୁ ପୋଷ୍ୟପୁତ୍ର କରିଥିଲେ । ସମୟକ୍ରମେ ଜମିଦାର ଆଚାର୍ଯ୍ୟ-ବଂଶ ପୁଣି ଭାଗ ଭାଗ ହୋଇଯାଇଥିଲା; ମାତ୍ର ନରସିଂହ ପ୍ରହରାଜଙ୍କ ପରିବାର ସ୍ୱଚ୍ଛଳ ଥିଲା । ନରସିଂହ ପ୍ରହରାଜ ପୁରୀ ଜିଲ୍ଲାର ବୀରନରସିଂହପୁର ଗ୍ରାମରେ ବିବାହ କରିଥିଲେ । ତାଙ୍କର ସତର ଗୋଟି ସନ୍ତାନ ମଧ୍ୟରୁ ପ୍ରଥମ ସନ୍ତାନ କନ୍ୟା ଏବଂ ଦ୍ୱିତୀୟ ସନ୍ତାନ ଗୋପାଳ ଚନ୍ଦ୍ର ଥିଲେ । ସୁତରାଂ ଗୋପାଳ ଚନ୍ଦ୍ର ପ୍ରହରାଜ ଜମିଦାର ନରସିଂହ ପ୍ରହରାଜଙ୍କ ଜ୍ୟେଷ୍ଠ ପୁତ୍ର ଥିଲେ ଏବଂ ପିଲାଦିନେ ବହୁ ଆୟସରେ ଲାଳିତପାଳିତ ହୋଇଥିଲେ । ପିଲାଦିନେ ତାଙ୍କର ବୁଢ଼ୀମା' ଏବଂ ବଡ଼ବୋଉଙ୍କ ପ୍ରଭାବ ତାଙ୍କ ଉପରେ ବିଶେଷ ଭାବରେ ପଡ଼ିଥିଲା ଏବଂ ବୁଢ଼ୀମା'ଙ୍କଠାରୁ ସେ ବହୁ ଗଳ୍ପ ଶୁଣିଥିଲେ । ପିଲାଦିନେ ଶୁଣିଥିବା ସେହି ଗଳ୍ପମାନଙ୍କ ମଧ୍ୟରୁ କେତେକ ପରବର୍ତ୍ତୀ କାଳରେ ସେ ଲେଖିଥିବା 'ଉତ୍କଳ କାହାଣୀ' ବହିରେ ସ୍ଥାନ ପାଇଅଛି ।

ପ୍ରହରାଜ ସ୍ୱୀୟ ଆତ୍ମଜୀବନୀର ପ୍ରଥମ ଭାଗରେ ତାଙ୍କର ପିଲାଦିନର କଥା ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ପିଲାଦିନେ ସେ ଅତି ଦୁଷ୍ଟ ଥିଲେ ଏବଂ ଘରେ ଓ ସ୍କୁଲରେ ଦୁଷ୍ଟାମି କରୁଥିଲେ । ଦୁଷ୍ଟାମି କରି ଥରେ ଚୁଲିନିଆଁରେ ଗୋଡ଼ ପୋଡ଼ିପକାଇଥିଲେ । ତାହା ଭଲହେବାକୁ ତିନି ମାସ ଲାଗିଥିଲା । ମାତ୍ର ତାଙ୍କର ସ୍ନେହଶୀଳ ଓ ଉଦାର ସ୍ୱଭାବ ହେତୁ, ବହୁ ଦୁଷ୍ଟାମି ସତ୍ତ୍ୱେ, ତାଙ୍କର ଭାଇଭଉଣୀମାନେ ସମସ୍ତେ ତାଙ୍କୁ ଅତି ଭଲପାଉଥିଲେ । ପରମ୍ପରା ଅନୁସାରେ ସେ ଚାହାଳୀରେ ଅବଧାନଙ୍କ ପାଖରେ ବିଦ୍ୟାରମ୍ଭ କରିଥିଲେ । ଶୈଶବରେ ସେ ତୀକ୍ଷ୍ଣ ବୁଦ୍ଧି ଓ ମେଧାର ପରିଚୟ ଦେଇ ନ ଥିଲେ । ମାତ୍ର ସାଧାରଣ ଛାତ୍ରମାନଙ୍କ ଅପେକ୍ଷା ଗୁରୁଙ୍କୁ ଅଧିକ ଭକ୍ତି ଓ ସମ୍ମାନ ଦେଖାଉଥିଲେ ଏବଂ ତାଙ୍କୁ ଭଲ ଭଲ ପଦାର୍ଥ ଖାଇବାକୁ ଦେଉଥିଲେ । ସେ ଲେଖିଛନ୍ତି ଯେ, ପିଲାଦିନେ ସେ କାଶୀ ପଣ୍ଡିତଙ୍କଠାରୁ ପଣକିଆ ଓ ବର୍ଣ୍ଣବୋଧ, ବାଞ୍ଛାନିଧି ମାଷ୍ଟରଙ୍କଠାରୁ ଇଂରାଜୀ ଏବଂ ଜାନକୀରମଣ ସିଂହଙ୍କଠାରୁ ଉତ୍ତମ ହସ୍ତାକ୍ଷର ଲେଖି ଶିଖିଥିଲେ । ଈଶ୍ୱରଚନ୍ଦ୍ର ପଣ୍ଡିତଙ୍କଠାରୁ ଉର୍ଦ୍ଧ୍ୱକୁଲାର ପାଇଁ ପଢ଼ାହେଉଥିବା ସାହିତ୍ୟରେ ରୁଚି ଲାଭକରିଥିଲେ । ତାଙ୍କ ନନା ପୁଅକୁ ଦଣ୍ଡ ଦେଇ ପଢ଼ାଇବାକୁ ଶିକ୍ଷକମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

ପ୍ରାଥମିକ ଶିକ୍ଷା ଶେଷକରି ସେ ସିଦ୍ଧେଶ୍ୱରପୁର ମଧ୍ୟ-ଭର୍ଣ୍ଣାକୁଲାର ସ୍କୁଲରେ ପଢ଼ିଥିଲେ । ସେ ସ୍କୁଲ ତାଙ୍କ ନନା ପ୍ରତିଷ୍ଠା କରିଥିଲେ । ସେ ସ୍କୁଲରେ ପଢ଼ାହେଉଥିବା 'ଆଖ୍ୟାନ ମଞ୍ଜରୀ' ବହିରେ ପିତୃଭକ୍ତି, ପରୋପକାର, ସନ୍ତାନବାତ୍ସଲ୍ୟ ପ୍ରଭୃତି ବିଷୟମାନଙ୍କ ଉପରେ ପ୍ରବନ୍ଧମାନ ଥିଲା । ସେଗୁଡ଼ିକ ସେ ମୁଖସ୍ଥ କରି ଅନେକ ସମୟରେ ତାଙ୍କ ବୋଉ, ବଡ଼ବୋଉ ଓ ବୁଢ଼ୀମା'ଙ୍କ ପାଖରେ କହୁଥିଲେ । ଅନେକ ସମୟରେ ସେମାନଙ୍କ ପାଖରେ ସେ ବହି ମଧ ପଢ଼ି ଶୁଣାଉଥିଲେ, ମାତ୍ର ସେମାନେ ସେ ପ୍ରବନ୍ଧଗୁଡ଼ିକର ଭାଷା ମୋଟେ ବୁଝିପାରୁନଥିଲେ । ସେହି କାଳରୁ ପୁସ୍ତକମାନଙ୍କରେ ସାଧାରଣ ଲୋକ ବୁଝିପାରିଲା ଭାଷା ବ୍ୟବହାରର ଆବଶ୍ୟକତା ସେ ଅନୁଭବ କରିପାରିଥିଲେ ଏବଂ ପରବର୍ତ୍ତୀ କାଳରେ ତାହା ପୂରଣ କରିବାକୁ ଚେଷ୍ଟାକରୁଥିଲେ । ୧୮୮୫ ମସିହାରେ ତାଙ୍କୁ ଏଗାର ବର୍ଷ ବୟସ

ହୋଇଥିବା ସମୟରେ ତାଙ୍କର ମା' ମରିଯାଇଥିଲେ ଏବଂ ମାତାଙ୍କ ବିୟୋଗରେ ସେ ତାଙ୍କର ପ୍ରଥମ କବିତା ପୁସ୍ତକ 'ମାତୃବିୟୋଗ' ଲେଖିଥିଲେ । ସିଦ୍ଧେଶ୍ୱରପୁର ସ୍କୁଲରୁ ସେ ମଧ-ଭର୍ଣ୍ଣାକୁଲାର ପରୀକ୍ଷା ଦେଇ ତୃତୀୟ ଶ୍ରେଣୀରେ ପାସ୍ କରିଥିଲେ । ଦ୍ୱିତୀୟ ଥର ମଧ-ଇଂରାଜୀ ପରୀକ୍ଷା ଦେଇ ଦ୍ୱିତୀୟ ଶ୍ରେଣୀରେ ପାସ୍ କରିଥିଲେ ।

**ଉଚ୍ଚଶିକ୍ଷା –**

୧୮୮୭ ମସିହାରେ ତେରବର୍ଷ ବୟସରେ ଉଚ୍ଚଶିକ୍ଷା ପାଇଁ ସେ କଟକ ଆସିଥିଲେ । ସିଦ୍ଧେଶ୍ୱରପୁରଠାରୁ କଟକ ମାତ୍ର କୋଡ଼ିଏ କିଲୋମିଟର ଦୂର ହୋଇଥିଲେ ସୁଦ୍ଧା ପ୍ରଥମରେ ଘର ଛାଡ଼ି କଟକରେ ରହିବାକୁ ଯାଉଥିବା ହେତୁ ଗଲାବେଳେ ତାଙ୍କ ବୁଢ଼ୀମା', ବଡ଼ବୋଉ ଏବଂ ଭଉଣୀମାନେ ସମସ୍ତେ କାନ୍ଦୁଥିଲେ । ବାହାରିଲାବେଳେ ବନମାଳୀ ଅବଧାନେ ଏବଂ ପୁରୋହିତ ମଙ୍ଗଳାଷ୍ଟକ ବୋଲୁଥିଲେ ଏବଂ ଭଣ୍ଡାରି ଭଣ୍ଡାରୁଣୀ ଆଗରେ ଶୁଭସୂଚକ ଦହି ଓ ମାଛ ଦେଖାଉଥିଲେ । ଦେଠେଈ ଓ ବୁଢ଼ୀମା' ପ୍ରଭୃତି ତାଙ୍କୁ ବିଦାୟଦେବାକୁ ଗାଁମୁଣ୍ଡ ପର୍ଯ୍ୟନ୍ତ ଆସିଥିଲେ । ଖଣ୍ଡିଏ ସବାରିରେ ତାଙ୍କ ନନା ଏବଂ ଆଉ ଖଣ୍ଡିଏ ସବାରିରେ ସେ କଟକ ଆସିଲେ । ସଙ୍ଗରେ ତାଙ୍କ ଘରର ପୁରୁଣା ଚାକର ବୁଢ଼ା ଦାମ ବାରିକ ଏବଂ ପୂଝାରୀ କାର୍ଯ୍ୟ କରିବାପାଇଁ ତାଙ୍କର ବାନ୍ଧବ ହଳଧର ନନ୍ଦ ଆସିଥିଲେ । ଏହିପରି ଆଡ଼ମ୍ବରରେ ଆସି ସେ କଟକ ରେଭେନ୍ସା କଲେଜିଏଟ୍ ସ୍କୁଲରେ ନାମ ଲେଖାଇଥିଲେ । ସ୍କୁଲରେ ଶଶିଭୂଷଣ ରାୟ ଏବଂ ଶ୍ରୀକୃଷ୍ଣ ମହାପାତ୍ର ତାଙ୍କର ସହପାଠୀ ଥିଲେ ।

ସ୍କୁଲରେ ସେ ଭଲ ପଢୁଥିଲେ ଏବଂ ବିଭିନ୍ନ ଶ୍ରେଣୀରେ ପ୍ରଥମ ତିନିଜଣଙ୍କ ମଧରେ ରହୁଥିଲେ । ସେତେବେଳେ ପାରମ୍ପରିକ ରୀତିରେ ତାଙ୍କ ମୁଣ୍ଡରେ ଚୁଟି ଥିଲା ଏବଂ ସେ ମୁଣ୍ଡରେ ଗଣ୍ଡିପକାଉଥିଲେ । କଲେଜରେ ବି.ଏ. ପଢ଼ିବା ପର୍ଯ୍ୟନ୍ତ ତାଙ୍କ ମୁଣ୍ଡରେ ଚୁଟି ଥିଲା ଏବଂ ସ୍କୁଲ ଓ କଲେଜର ବଙ୍ଗାଳୀ ପିଲାମାନେ ତାଙ୍କୁ ସେଥିପାଇଁ ଥଟ୍ଟା କରୁଥିଲେ । ସ୍କୁଲରେ ଗଣିତରେ ସେ ଭଲକରିପାରୁନଥିଲେ; ମାତ୍ର ଅନ୍ୟ ବିଷୟମାନଙ୍କରେ ଭଲ ନମ୍ବର ରଖୁଥିଲେ । ବ୍ରତ ହେବା ପରେ ନନାଙ୍କୁ ଡରି ସନ୍ଧ୍ୟା, ବୈଶ୍ୱଦେବ, ନିତ୍ୟକର୍ମ ଆଦି କରିବାରୁ ଏବଂ ଅନେକ ସ୍ତୋତ୍ର ମୁଖସ୍ଥ କରିଥିବାରୁ ସେଗୁଡ଼ିକ ତାଙ୍କୁ ସଂସ୍କୃତପଢ଼ାରେ ସାହାଯ୍ୟ କରିଥିଲା; ମାତ୍ର ବ୍ୟାକରଣପାଠରେ ଅବହେଳା କରିଥିବାରୁ ପରବର୍ତ୍ତୀ କାଳରେ ତାଙ୍କୁ ଅନୁତାପ କରିବାକୁ ପଡ଼ିଥିଲା ବୋଲି ସେ ଲେଖିଛନ୍ତି । ଭାଷାକୋଷ ସଂକଳନ ସମୟରେ ସଂସ୍କୃତ ବ୍ୟାକରଣ ଜ୍ଞାନ ତାଙ୍କର ଆବଶ୍ୟକ ହେଉଥିଲା ।

ସ୍କୁଲରେ ପଢ଼ିବା ସମୟରୁ ଆମ ସମାଜରେ ଘଟୁଥିବା ଛଳନା ଏବଂ ଶଠତା ବିଷୟରେ ତାଙ୍କର ଗୋଟିଏ ଧାରଣା ହୋଇଥିଲା; ପରବର୍ତ୍ତୀ କାଳରେ ସେ ଧାରଣା ତାଙ୍କର ଦୃଢ଼ ହୋଇଥିଲା । ସେ ବ୍ୟଙ୍ଗ-ସାହିତ୍ୟରେ ତାହାକୁ ବିଶଦଭାବରେ ଆଲୋଚନା କରିଥିଲେ । ସେ ଲେଖିଛନ୍ତି – ''ଯାହା ଶିଶୁ ଅବସ୍ଥାରେ ଦେଖିଲି ଓ ବାଲ୍ୟ ଅବସ୍ଥାରେ ସ୍କୁଲରେ ଦେଖିଲି, ଯୌବନାବସ୍ଥାରେ କଲେଜରେ ଓ ପ୍ରୌଢ଼ାବସ୍ଥାରେ ସଂସାରରେ ଦେଖିଲି, ସେଥିରୁ ମୋର ଧାରଣା ହେଉଛି ଯେ, ଆମେ ପିଲାଦିନୁ ମିଛ କହିବା ଧାତୁରେ ଗଢ଼ାହୋଇଆସିଛୁ; ଈଶ୍ୱର-

ବିଶ୍ୱାସରେ ଦୃଢ଼ତା ମଧ ହରାଇଛୁ । ସତ୍ୟ କହିବା ଲାଗି ଉପଦେଶ ପାଠ୍ୟ ପୁସ୍ତକରେ ନିବଦ୍ଧ ଥିଲା; ବାସ୍ତବ ଜଗତ୍ ସହିତ ତାର କୌଣସି ସଂମ୍ପର୍କ ନ ଥିଲା ।'' କଲେଜିଏଟ୍ ସ୍କୁଲରେ ପଢ଼ିଲାବେଳେ ସିଦ୍ଧେଶ୍ୱରପୁରର ସ୍କୁଲ-ଛାତ୍ରମାନଙ୍କୁ ସୁଲଭ ମୂଲ୍ୟରେ କାଗଜ, କଲମ ଓ ପେନ୍‌ସିଲ୍ ପ୍ରଭୃତି ଯୋଗାଇଦେବାକୁ ସେ 'ପ୍ରହରାଜ ଏବଂ ଆଚାର୍ଯ୍ୟ ଆଣ୍ଡ କୋ' ନାମରେ ଗୋଟିଏ କଂପାନୀ ଗଢ଼ିଥିଲେ । ତାହାର ମୂଳଧନ ମାତ୍ର ଦୁଇଟଙ୍କା ଥିଲା । ଏହା ବିଶେଷ କାର୍ଯ୍ୟକାରୀ ହୋଇନଥିଲା । ମାତ୍ର ଏହା ସେ ସମୟରେ ତାଙ୍କ ମନୋବୃତ୍ତିର ପରିଚୟ ଦିଏ ।

୧୮୯୧ ମସିହାରେ ସେ କଲିକତା ବିଶ୍ୱବିଦ୍ୟାଳୟର ଏଣ୍ଟ୍ରାନ୍ସ ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀରେ ପାସ୍ କରିଥିଲେ ଏବଂ ଓଡ଼ିଶାରେ ତୃତୀୟ ସ୍ଥାନ ଅଧିକାର କରି ଡିଭିଜନାଲ ବୃତ୍ତି ମାସକୁ ୧୫ ଟଙ୍କା ହାରରେ ପାଇଥିଲେ । ତାହାପରେ ସେ ରେଭେନ୍ସା କଲେଜରେ ଏଫ୍.ଏ. ଶ୍ରେଣୀରେ ନାମ ଲେଖାଇଥିଲେ । ମାତ୍ର ସେ ବର୍ଷ ସେ କୁସଙ୍ଗରେ ପଡ଼ି ପଞ୍ଚମକାରରେ ଲିପ୍ତହୋଇଗଲେ; ଫଳରେ ବାର୍ଷିକ ପରୀକ୍ଷାରେ ସେ ଅକୃତକାର୍ଯ୍ୟ ହେଲେ । ତାପରେ ପିତାଙ୍କ ତାଡ଼ନାରେ ତାଙ୍କର ଗଭୀର ଅନୁଶୋଚନା ଜାତହେଲା ଏବଂ ସେ କୁସଙ୍ଗ ତ୍ୟାଗ କରି ସଂକଳ୍ପବଦ୍ଧ ହୋଇ ପାଠ ପଢ଼ିଲେ । ୧୮୯୪ ମସିହାରେ ସେ ପ୍ରଥମ ଶ୍ରେଣୀରେ ଏଫ.ଏ. ପାସ୍ କଲେ ଏବଂ ଅଗଷ୍ଟ ମାସରେ କଲିକତାର ଶିବପୁର ଇଞ୍ଜିନିୟରିଂ ସ୍କୁଲରେ ପଢ଼ିବାକୁ ଗଲେ । ସେତେବେଳେ କଟକରୁ କଲିକତାକୁ ରେଲଲାଇନ୍ କାର୍ଯ୍ୟକାରୀ ହୋଇ ନ ଥିଲା । ସେ ତାଙ୍କ ନନାଙ୍କ ସହିତ କଟକରୁ ଚାନ୍ଦବାଲି ପର୍ଯ୍ୟନ୍ତ ଷ୍ଟିମ୍‌ଲଞ୍ଚରେ ଯାଇ ସେଠାରୁ ଜାହାଜରେ କଲିକତା ଯାଇଥିଲେ । ତାଙ୍କ ସଙ୍ଗରେ ପୂଜାହାରୀ ଓ ଚାକର ଥିଲେ । ସେମାନେ କଟକରୁ ବାହାରିବାର ଚାରିଦିନ ପରେ କଲିକତାର କୋଇଲଘାଟରେ ପହଞ୍ଚିଥିଲେ । ମାତ୍ର ବର୍ଷେକ ପରେ ଅସୁସ୍ଥତା ହେତୁ ଇଞ୍ଜିନିୟରିଂ ପଢ଼ା ଛାଡ଼ି ରେଭେନ୍ସା କଲେଜରେ ବି.ଏ. କ୍ଲାସରେ ନାମ ଲେଖାଇଥିଲେ ଏବଂ ୧୮୯୮ ମସିହାରେ ବି.ଏ.ପାସ୍ କରିଥିଲେ ।

ତାହାପରେ ସେ ବି.ଏଲ୍ ପଢ଼ି ୧୯୦୦ ଖ୍ରୀଷ୍ଟାବ୍ଦରେ ପାସ୍ କରିଥିଲେ । ବି.ଏଲ୍ ପାସ୍‌କରିବା ପରେ, ୧୯୦୨ ମସିହାରେ ସେ ମଧୁବାବୁଙ୍କ ସହଯୋଗୀ ଭାବରେ କଟକରେ ଓକିଲାତି ଆରମ୍ଭ କରିଥିଲେ; ମାତ୍ର ଅଳ୍ପକାଳ ପରେ ନିଜେ ସ୍ୱାଧୀନ ଭାବରେ ଓକିଲାତି ବ୍ୟବସାୟ କରିଥିଲେ । ତାଙ୍କ ଲିଖିତ 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା' ଏବଂ 'ବାଇ ମହାନ୍ତି ପାଞ୍ଜି'ରୁ ଜଣାଯାଏ ଯେ, ଓକିଲାତି ବ୍ୟବସାୟଟା ତାଙ୍କୁ ଭଲଲାଗୁନଥିଲା । ସେ ବହିମାନଙ୍କରେ ଓକିଲାତି ବ୍ୟବସାୟର କଟୁ ସମାଲୋଚନା କରିଛନ୍ତି । ପ୍ରଥମ ଅବସ୍ଥାରେ ହାକିମ ଚାକିରି କରିବାକୁ ସେ ଚେଷ୍ଟାକରିଥିଲେ; ମାତ୍ର ସେଥିରେ ସେ କୃତକାର୍ଯ୍ୟ ହୋଇ-ପାରିନଥିଲେ । ଓକିଲାତି ପ୍ରତି ବିମୁଖ ଥିବା ସତ୍ତ୍ୱେ ଜୀବନର ଶେଷ ପର୍ଯ୍ୟନ୍ତ ତାହାହିଁ ତାଙ୍କର ବୃତ୍ତି ଥିଲା ଏବଂ ସେଥିରେ ସେ ପ୍ରଚୁର ଅର୍ଥ ଅର୍ଜନ କରିଥିଲେ ।

**କର୍ମ-ଜୀବନ –**

ବି.ଏଲ୍. ପାସ୍ କରି ୧୯୦୨ ମସିହାରେ କଟକରେ ଆଇନ ବ୍ୟବସାୟ ଆରମ୍ଭ କରିବାଠାରୁ ୧୯୪୫ ମସିହାରେ ତାଙ୍କର ତିରୋଧାନ ପର୍ଯ୍ୟନ୍ତ ପ୍ରାୟ ତେୟାଳିଶ୍ ବର୍ଷ

କାଳ ତାଙ୍କ ଜୀବନ କର୍ମମୟ ଥିଲା । ଏହି ଚେୟାଳିଶ ବର୍ଷ ସମୟ ମଧ୍ୟରେ ଏକସଙ୍ଗରେ କରୁଥିବା ବିଭିନ୍ନ କାର୍ଯ୍ୟ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ସେ ପ୍ରଧାନତଃ ତିନି ପ୍ରକାର କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ପ୍ରଥମରେ ନିଜର ଓ ନିଜ ପରିବାରର ଜୀବିକା-ନିର୍ବାହ କରିବା ପାଇଁ ଆଇନ ବ୍ୟବସାୟ ତାଙ୍କର ପ୍ରଧାନ ବୃତ୍ତି ଏବଂ ଅର୍ଥ ଉପାର୍ଜନର ମାଧ୍ୟମ ଥିଲା । ଆଇନ ବ୍ୟବସାୟ ସହିତ ନିଜ ପୈତୃକ ସମ୍ପତ୍ତି, ଜମିବାଡ଼ି ଏବଂ ଜମିଦାରି ମଧ୍ୟ ତାଙ୍କର ଆୟର ଅନ୍ୟ ଏକ ସୂତ୍ର ଥିଲା । ତାଙ୍କର ପିତା ନରସିଂହ ପ୍ରହରାଜଙ୍କର ୧୯୧୪ ମସିହାରେ ତିରୋଧାନ ପରେ ପ୍ରାୟ ତେର-ଚଉଦ ବର୍ଷ ସମୟ ଗାଁର ସମ୍ପତ୍ତିବାଡ଼ି ବିଷୟ ନିଜେ ବୁଝୁଥିଲେ ଏବଂ ବାପାଙ୍କର ଜ୍ୟେଷ୍ଠ ଏବଂ ସବୁଠାରୁ ଉଚ୍ଚ ଶିକ୍ଷିତ ପୁତ୍ର ହିସାବରେ ଏକ୍ଷେତ୍ରରେ ତାଙ୍କର ଦାୟିତ୍ୱ ଅଧିକ ଥିଲା ।

ଆଇନ ବ୍ୟବସାୟ ଏବଂ ନିଜ ସମ୍ପତ୍ତି ପରିଚାଳନା ସହିତ, ସେ ତାଙ୍କ ସାରା ଜୀବନକାଳ ମଧ୍ୟରେ ସାହିତ୍ୟସେବା, ବିଭିନ୍ନ ରାଜନୈତିକ କାର୍ଯ୍ୟ ଏବଂ ସାଧାରଣ ଜନସେବା କାର୍ଯ୍ୟରେ ଲିପ୍ତ ଥିଲେ । ରାଜନୈତିକ ଏବଂ ଜନସେବା କାର୍ଯ୍ୟ ମଧ୍ୟରେ ଓଡ଼ିଶାର ଦେଶମିଶ୍ରଣ କାର୍ଯ୍ୟ, ଜିଲ୍ଲାବୋର୍ଡ ଓ ମ୍ୟୁନିସିପାଲିଟି ପରିଚାଳନା ଏବଂ ବିଭିନ୍ନ ଶିକ୍ଷାନୁଷ୍ଠାନ ପରିଚାଳନା ଅନ୍ତର୍ଭୁକ୍ତ । ଏହି ଦୁଇଟି କାର୍ଯ୍ୟ ବ୍ୟତୀତ ସ୍କୁଲ-କଲେଜରେ ପଢ଼ିବା ସମୟରୁ ୧୯୪୫ ମସିହାରେ ତାଙ୍କର ଦେହାନ୍ତ ପର୍ଯ୍ୟନ୍ତ ଓଡ଼ିଆ ଭାଷା ଓ ସାହିତ୍ୟ ସେବା ତାଙ୍କ ଜୀବନର ଗୋଟିଏ ପ୍ରଧାନ କାର୍ଯ୍ୟ ହୋଇଥିଲା । ବୈଷୟିକ ଜଞ୍ଜାଳ ମଧ୍ୟରେ ସେ ଅନବରତ ସାହିତ୍ୟ-ସାଧନା କରୁଥିଲେ । ଏହି ସାହିତ୍ୟ-ସାଧନାର ଗୁରୁତ୍ୱ କ୍ରମେ କ୍ରମେ ଅଧିକ ହୋଇଥିଲା ଏବଂ ଜୀବନର ସବୁଠାରୁ ଅଧିକ କର୍ମମୟ ସମୟ ୧୯୧୩ ମସିହାରୁ ୧୯୪୦ ମସିହା ମଧ୍ୟରେ ଓଡ଼ିଆରେ ଏକ ପୂର୍ଣ୍ଣାଙ୍ଗ ଭାଷାକୋଷ ସଂକଳନ ଓ ପ୍ରକାଶନ ତାଙ୍କ ଜୀବନର ସର୍ବପ୍ରଧାନ କାର୍ଯ୍ୟ ହୋଇଥିଲା । ସେହି କାର୍ଯ୍ୟ ଚାଲିଥିବା ସମୟରେ ସେ ତାଙ୍କର ପ୍ରଧାନ ବୃତ୍ତି ଆଇନ ବ୍ୟବସାୟକୁ ମଧ୍ୟ ଗୌଣ କରିଦେଇଥିଲେ ଏବଂ ଗ୍ରାମରେ ତାଙ୍କର ସମ୍ପତ୍ତି ପରିଚାଳନାର ଦାୟିତ୍ୱ ତାଙ୍କର ପତ୍ନୀ ଓ ପୁତ୍ରକୁ ଦେଇଥିଲେ । ଫଳରେ ସେ ଓଡ଼ିଆଭାଷାର ସର୍ବଶ୍ରେଷ୍ଠ ଭାଷ୍ୟକାର ହେଲେ ଏବଂ ତାଙ୍କର ଭାଷାକୋଷ ଓଡ଼ିଆ ଜାତିକୁ ତାଙ୍କର ଚିରନ୍ତନ ଏବଂ ସର୍ବଶ୍ରେଷ୍ଠ ଅବଦାନ ହେଲା । ଆଜି ଯଦି ଓଡ଼ିଆ ଜାତି ତାଙ୍କର ସ୍ମୃତି ପୂଜା କରୁଛି, ତାହା ତାଙ୍କର ଭାଷାକୋଷ ସଂକଳନ ଓ ସାହିତ୍ୟ-ସାଧନା ପାଇଁ; ତାଙ୍କର ଆଇନ ବ୍ୟବସାୟ କିମ୍ବା ସମ୍ପତ୍ତି ପରିଚାଳନା ପାଇଁ ନୁହେଁ ।

## (କ) ଆଇନ ବ୍ୟବସାୟ ଓ ପୈତୃକ ସମ୍ପତ୍ତି ପରିଚାଳନା –

ପ୍ରହରାଜ ମଧୁବାବୁଙ୍କ ସହଯୋଗୀ ଭାବରେ ଆଇନ ବ୍ୟବସାୟ ଆରମ୍ଭ କରିଥିଲେ । ମଧୁବାବୁ ଓଡ଼ିଶାରେ ପ୍ରଥମ ବି.ଏଲ୍. ପାସ୍ କରିଥିବା ଓଡ଼ିଆ ଓକିଲ ଏବଂ ତାଙ୍କର ବିଦ୍ୟା ଓ ବୁଦ୍ଧି ବଳରେ ତାଙ୍କ ସମୟରେ ଓଡ଼ିଆମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଓକିଲ ହୋଇଥିଲେ । ସେ ସମୟରେ ଗୋକୁଳାନନ୍ଦ ଚୌଧୁରୀଙ୍କଠାରୁ ଆରମ୍ଭ କରି ଗୋପାଳ ଚନ୍ଦ୍ର ପ୍ରହରାଜ, ଗୋପବନ୍ଧୁ ଦାସ ପ୍ରଭୃତି ଅଧିକାଂଶ ଉଚ୍ଚାଭିଳାଷୀ ଯୁବ ଓକିଲ ପ୍ରଥମେ ମଧୁବାବୁଙ୍କ

ସହଯୋଗୀ ହୋଇ ଆଇନ ବ୍ୟବସାୟ ଶିକ୍ଷା କରିବାକୁ ଅତ୍ୟନ୍ତ ଆଗ୍ରହୀ ଥିଲେ । ଅଳ୍ପକାଳ ଜୁନିଅର ଓକିଲ ହେବା ପରେ, ପ୍ରହରାଜ ନିଜେ ସ୍ୱାଧୀନ ଭାବରେ ଓକିଲାତି କଲେ ଏବଂ ସେ ବ୍ୟବସାୟରେ ସେ ଖ୍ୟାତି ଲାଭ କରି ପ୍ରଚୁର ଅର୍ଥ ରୋଜଗାର କରିଥିଲେ । କଟକ ଜିଲ୍ଲାର ଗ୍ରାମାଞ୍ଚଳରେ ପ୍ରହରାଜ ପରିବାରର ପ୍ରତିପତ୍ତି ତାଙ୍କୁ ସେ କାର୍ଯ୍ୟରେ ସାହାଯ୍ୟ କରିଥିଲା । ସେହି ବ୍ୟବସାୟରେ ଖ୍ୟାତି ହେତୁ ସେ ସରକାରୀ ମହଲରେ ମଧ୍ୟ ସୁନାମ ଅର୍ଜନ କରିଥିଲେ । ୧୯୧୩ ମସିହାରେ ପୁରୀରେ ସେ ସରକାରୀ ଓକିଲ ରୂପେ ନିଯୁକ୍ତ ହୋଇଥିଲେ; ମାତ୍ର ଓକିଲାତି ବ୍ୟବସାୟର ସେ ଜଣେ କଟୁ ସମାଲୋଚକ ଥିଲେ ।

ତାଙ୍କର 'ଦୁନିଆର ହାଲଚାଲ' ଏବଂ 'ଆମ ଘରର ହାଲଚାଲ' ବହିମାନଙ୍କରେ ସେ ଓକିଲାତି ବ୍ୟବସାୟ ବିଷୟରେ କଟୁ ମନ୍ତବ୍ୟ ଦେଇଛନ୍ତି । ସେ ଲେଖିଛନ୍ତି, ''ଅନ୍ୟମାନଙ୍କ ଦୃଷ୍ଟିରେ ଏ ବୃତ୍ତି କାଳେ ଭାରି ସୁଆଦିଆ ଏବଂ ସ୍ୱାଧୀନ । ଏଥିରେ ଉପରିସ୍ତର ସ୍ତାବକତା କରିବାକୁ ପଡ଼େନା, ଆଉ କାହାରି ପଛରେ ଗୋଡ଼ାଇବାକୁ ପଡେନା; ନିଜ ଇଚ୍ଛା ଅନୁସାରେ ଅନେକ କିଛି କରିବାକୁ ପଡ଼େ । ନାହିରେ ତେଲ ଦେଇ ଶୋଇପଡ଼ିଲେ କେହି ଉଠ ବୋଲି କହିବାକୁ ନାହିଁ କି ନିଜ ଫନ୍ଦି ଭିତରେ ଅହର୍ନିଶ ନାକ ବୁଡ଼େଇ ରହିଲେ କାହାରି ମୁଣ୍ଡ ପୂରାଇବାର ସମ୍ଭାବନା ନାହିଁ । ପରିଶ୍ରମ ଅନୁସାରେ ଫଳ ମିଳିଯାଏ ହାତମୁଠାରେ । ଉପରକୁ ଏତେ ଚିକ୍କଣ ଦେଖାଯାଉଥିବା ବୃତ୍ତି ପ୍ରକୃତରେ ତାହା ନୁହେଁ । କଳାକୁ ଧଳା, ଧଳାକୁ କଳା କରିବାକୁ ହେଲେ ହାକିମଙ୍କଠାରୁ ଆରମ୍ଭ କରି ସବୁ ସ୍ତର, ରୁଚି, ଆଦର୍ଶର ସାଧାରଣ ମଣିଷକୁ ଆଉଁସିବାକୁ ପଡ଼େ । ବେଶି ସେବା କରିବାକୁ ପଡ଼େ ଦେଲଣିମାନଙ୍କର । ସେମାନେହିଁ ମହକିଲ ଯୋଗାଡ଼ କରି ଆଣନ୍ତି । ତାଙ୍କରି ମାଧ୍ୟମରେ ଓକିଲମାନେ ବିଚାରୀମାନଙ୍କର ସତ୍ୟାନାଶ କରିବାର ସୁଯୋଗ ପାଆନ୍ତି; ଧୋବଧାଉଳିଆ ବେଶରେ ଚୋରି କରନ୍ତି । ହାକିମମାନଙ୍କର ସୁକୁମାର, ଧର୍ମାବତାର ଦେହରେ ଷୋଡ଼ଶୋପଚାରେ ପୂଜା ଲଗେଇ ତୁଷ୍ଟ କରିବାକୁ ସାଧନା କରନ୍ତି । ସେମାନଙ୍କର ମହତ୍ତ୍ୱ ଓ ବ୍ୟକ୍ତିତ୍ୱ ତାଙ୍କରି ହାତରେ; କାରଣ ଆଇନ୍‌କାନୁନ୍, ଅଦାଲତ ବଡ଼ଲୋକଙ୍କ ପାଇଁ । ଯେ ପଇସା ବିଞ୍ଚିପାରିଲା, ତାହାରି ଜୟ । ସେମାନଙ୍କର ମିଞ୍ଜାସକୁ ନ ଜଗିଲେ ଫଳ ତା ବାଟ କରି ବାହାରିଯାଏ । ଦିଅଁ ଦୁଆରେ ପହଞ୍ଚିବାକୁ ହେଲେ ପ୍ରଥମେ ଦେହ କିଳିବାକୁ ପଡ଼େ । ସେମାନଙ୍କ ଅକାଟ୍ୟ ବର ଲାଭ କରିବା ପାଇଁ ଉଦ୍ୟାନ ସମ୍ମିଳନୀ, ସଂଧ୍ୟାମିଳନ, ଟା' ସମ୍ମିଳନୀ, ଭୋଜନ ମିଳନରେ ଚଣ୍ଡୀ-ଚାମୁଣ୍ଡାମାନଙ୍କ ସହିତ ମିଳିତ ହେବାକୁ ପଡ଼େ । ପଦ୍ମତୋଳାଠାରୁ ଆରମ୍ଭକରି ସ୍ତୁତିପାଠରେ, ଯିଏ ଯୋଉଥିରେ ତୁଷ୍ଟ ହେବେ, ତାହା କରି ନ ପାରିଲେ ଏ ବ୍ୟବସାୟରେ ଚଣା-ଚର୍ବଣ ହିଁ ସାର ହୁଏ; କାରଣ ଏଥିରେ ସମସ୍ତେ ହାକିମ — ହାକିମ ତେତ୍ରିଶ କୋଟି ଦେବଦେବୀ । ଓକିଲଗୁଡ଼ିକ ଚପରାସି— ହୀନ ଚପରାସି । ଏହା ସ୍ୱାଧୀନ ବ୍ୟବସାୟ ନୁହେଁ । ପେଶାରେ ସ୍ୱାଧୀନତା ନ ଥାଏ । ଚାକିରିରେ ନିର୍ଦ୍ଦିଷ୍ଟ ପରାଧୀନତା ଥାଏ; ମାତ୍ର ଓକିଲାତିରେ ପରାଧୀନତା ଅନିର୍ଦ୍ଦିଷ୍ଟ ।

ଓକିଲାତି ବ୍ୟବସାୟ ଅଲରା, ଅସନା, ନିରଗୁଣା ପେଶା । ଜୋତାସିଲାଇଠାରୁ ଚଣ୍ଡୀପାଠ, ତାହା ଗାଲୁଆମିଠାରୁ ପାଣ୍ଡିତ୍ୟ ପ୍ରଦର୍ଶନରେ ଅଲଣା କ୍ଷେତ୍ରହିଁ ଓକିଲାତି ।

ନାଚି ନ ଜାଣି, ଗାଇ ନ ଜାଣି, ବିଛାମନ୍ତର ନ ଜାଣି ନିଜକୁ ନୃତ୍ୟ, ଗୀତ ଓ ସର୍ପବଶୀକରଣ କଳାରେ ଧୂରୀଣ ବୋଲି ଫିସାଦି କରିବାକୁ ପଡ଼େ; ସର୍ବଜ୍ଞାନତାପଣିଆ ସାବ୍ୟସ୍ତ କରିବାକୁ ପଡ଼େ । ଏତକ ନକରିପାରିଲେ ପେଶା ବିଗିଡ଼ିଯାଏ । ତେଣୁ ଓକିଲାତି ଛଳବାହିକମାନଙ୍କର ବୃତ୍ତି । ଏ ପେଶାରେ ମଣିଷ କିଛି ହୋଇପାରେନା ।

ଏଥିରେ ଦେଶ, ସମାଜର ମଙ୍ଗଳ କରିବାର ନାହିଁ, ଏକଥା ନୁହେଁ; ମାତ୍ର ସ୍ୱାର୍ଥପର ମଣିଷ ଏତେ ସହଜରେ ଆଉ କାହାର ହିତ ଗହେଁନା । କ୍ଷମତା ଓ ଅର୍ଥ ପ୍ରଲୋଭନରେ ଦେଶଟାକୁ ଉଚ୍ଛନ୍ନ କରିବାକୁ ସେ ଆଗେଇଯାଏ । ମିସଲ ଉପରେ ଠିଆହୋଇ, ଧର୍ମଶାସ୍ତ୍ର ଛୁଇଁ ମଣିଷ ଶପଥ କରେ ମିଛ ନ କହିବାକୁ; ମାତ୍ର ତାହା ମିଛକଥାଗୁଡ଼ାକୁ ସେ ଏତେ କଳାତ୍ମକ ଭାବରେ ବଖାଣିଯାଏ ଯେ, ଆଉ ଏକ ନୂତନ ସତ୍ୟ ତା'ଛାଏଁ ପ୍ରତିଷ୍ଠିତ ହୋଇଯାଏ; କାରଣ ସତ୍ୟ ପ୍ରମାଣ ଉପରେ ନିର୍ଭରଶୀଳ ଏବଂ ଯା' ଅଣ୍ଟାରେ ପଇସାର ଜୋର୍ ଯେତେ ବେଶି, ସେ ସତ୍ୟକୁ ସେତିକି ଦାଣ୍ଡରେହିଁ ସଭିଙ୍କ ଆଗରେ ଠିଆକରାଇ-ଦେଇପାରେ । ଦିହ କିଳିଜାଣିଥିବା ଧୋବଧାଉଳିଆମାନେ ଅଣ୍ଟାରୁ ପଇସା ଖୋଲିଦିଅନ୍ତି, ଭଦ୍ର ଭାବରେ ଚୋରିକରନ୍ତି, ରଙ୍କୁଣୀଗୁଡ଼ାଙ୍କୁ ମାରିଗୋଡ଼ାନ୍ତି । ତିନି ତୁଣ୍ଡରେ ଛେଳି କୁକୁର ହୋଇଗଲା ପରି, ଓକିଲମାନଙ୍କ କାରସାଦିରେ ସତ୍ୟ ନ୍ୟାୟାଳୟର ଭୂତଖାନାରେ ସେ ଆପଣାଛାଏଁ ପାଗଳ ହୋଇଯାଏ । ଧର୍ମାବତାରମାନଙ୍କ ଆଡ଼କୁ ଅନିଷା କରି କରି ସେ ଘୁଂଗା ପାଲଟିଯାଏ ।''

ବ୍ୟଙ୍ଗାତ୍ମକ ଭାବରେ ହାକିମମାନଙ୍କୁ ସେ ଦଶ ଜାତିରେ ବିଭକ୍ତ କରିଛନ୍ତି – (୧) ସିଂହଜାତୀୟମାନେ ଉଚ୍ଚମନା, କ୍ଷମତାଶାଳୀ । ଏମାନେ ଅଧୀନକୁ ପଛ ଆଡୁ ମାରନ୍ତି ନାହିଁ । କ୍ଷମତା ଓ ବଳର ଅପବ୍ୟବହାର କରନ୍ତି ନାହିଁ । (୨) ବ୍ୟାଘ୍ରମାନେ ନିହାତି ଅଖାଡୁଆ ସ୍ୱଭାବର । ରାଗିଗଲେ ଏମାନେ ଆଗପଛ ସବୁଆଡ଼କୁ ସମାନ ଭାବନ୍ତି । ଭୋକ ନ ଥିଲେ ବି ସୁବିଧା ପାଇଲେ ପ୍ରକୃତି ଛାଡ଼ି ନ ପାରି କେତେଜଣଙ୍କ ତଣ୍ଟି ଚିପିଦିଅନ୍ତି । ମଡ଼ା ଛୁଅନ୍ତି ନାହିଁ । (୩) ମହିଷଜାତୀୟମାନେ ମାଂସାଶୀ ନୁହଁନ୍ତି । ଏମାନେ ଦଳଭିତରେ ଥାନ୍ତି; ଶତ୍ରୁକୁ ଉପଯୁକ୍ତ ଶିକ୍ଷା ଦିଅନ୍ତି । ଏମାନେ କି କର୍କଶ, ଭୟାନକ ! ପରାକ୍ରମଶାଳୀ ସିଂହ ଓ ବ୍ୟାଘ୍ରମାନେ ମଧ୍ୟ ଏମାନଙ୍କ କବଳରୁ ଖସିପାରନ୍ତି ନାହିଁ । (୪) ବରାହଜାତୀୟମାନେ ପରାକ୍ରମଶାଳୀ, ପ୍ରତିହିଂସାପରାୟଣ । ଏମାନେ ଏକୁଟିଆ ସବୁ କିଛି ଖାଇପାରନ୍ତି । ଏମାନେ ସୁବିଧାବାଦୀ, ନିଷ୍କରୁଣ । (୫) ଗୋଜାତୀୟମାନେ ଉପକାରୀ, ନିରୀହ । ସେମାନେ ସ୍ନେହୀ । ନିଜେ ଉପାସରେ ଦୁଃଖ ସହି ଅନ୍ୟମାନଙ୍କର ସୁଖ ପାଇଁ ଜୀବନ ଦିଅନ୍ତି । ଏମାନେ ନ ଥିଲେ ହାକିମମାନଙ୍କ ସଂସାର ଉଜୁଡ଼ିଯା'ନ୍ତା'। (୬) କ୍ଷୁଦ୍ରକାୟ କୁକୁରମାନଙ୍କର ଜୀବନ ମୁନିବର ସୁଖ ନିମନ୍ତେ ଉତ୍ସର୍ଗୀକୃତ । ଏମାନେ ନିମକହାରାମି କରନ୍ତି ନାହିଁ । ଗୋଟିଏ ଜାଗାରେ ଏକାଧିକ ଆଖଡ଼ା ଜମିଲେ, ଆଉ କେହି ଶାନ୍ତିରେ ରହିପାରନ୍ତି ନାହିଁ । (୭) ବିଲାତୀ ଜାତୀୟ ଅଶ୍ୱମାନଙ୍କ ପାଇଁ ଅଧିକ ଖରଚ ହୁଏ; ମାତ୍ର ଏମାନଙ୍କର କାମ କମ୍ । ପ୍ରଭୁମାନେ ମଧ୍ୟ ପାଟକନାରେ ଏମାନଙ୍କର ଅଙ୍ଗସେବା କରନ୍ତି ଏବଂ ଦଳଖିଆ

ଘୋଡ଼ାମାନଙ୍କର ଜନ୍ମ ଗାଡ଼ି ଟାଣିବା ପାଇଁ; ଚାରି ପଇସାର ଖାଇ ଚାରିଅଣାର କାମ କରନ୍ତି । ବୟସ ହୋଇଗଲେ, ସନ୍ତରାବଣରେ ଦଳ ଖାଇବା ପାଇଁ ଏମାନଙ୍କୁ ପଠାଇଦିଆଯାଏ । (୮) ଗଧଜାତୀୟମାନେ ସମସ୍ତଙ୍କର ଗୋଡ଼ଘଷା ପଥର । ଏମାନେ ଭାରବାହକ; ମାତ୍ର ଅକଳିଆ ଅବସ୍ଥାରେ ପ୍ରଭୁମାନେ ମଧ ଏମାନଙ୍କ ପାଦ ଧରନ୍ତି । (୯) ସର୍ପମାନଙ୍କ ମଧ୍ୟରେ ଅଧିକାଂଶ ବିଷଧର । ଏମାନେ ଅନିଷ୍ଟପରାୟଣ, ଧୂଳିଧୂସରିତ । ପଦ୍ମତୋଳା, ଗାରୁଡ଼ିବିଦ୍ୟାରେ ଏମାନେ ବଶ । ଏମାନେ ସମସ୍ତଙ୍କର ଭୟ ଓ ଘୃଣାର ପାତ୍ର । (୧୦) ସମାଜରେ ସବୁଠାରୁ ଅଧିକ ସଂଖ୍ୟକ ହାକିମ ମଶକ ଜାତୀୟ । ଏମାନଙ୍କର ଉତ୍ପତ୍ତି ନର୍ଦ୍ଦମାରୁ; ଅଳ୍ପପରମାୟୁବିଶିଷ୍ଟ । କାମୁଡ଼ିବା ପୂର୍ବରୁ ଗୁଣୁଗୁଣୁ ହୁଅନ୍ତି । ଧୂଆଁ ଦେଲେ କୋଉଠି ଲୁଚିଯାନ୍ତି; ଧୂଆଁ ସରିଗଲେ ପୁଣି ପଦାକୁ ବାହାରିଆସନ୍ତି । ଅଳ୍ପ ବିଷଧାରୀ ହେଲେ ମଧ୍ୟ ଏମାନେ ଅନିଷ୍ଟ କରନ୍ତି; ବିରକ୍ତ ବି କରନ୍ତି । ପ୍ରଧାନତଃ ହାକିମମାନଙ୍କୁ ଉପରୋକ୍ତ ଦଶ ଭାଗରେ ବିଭକ୍ତ କରିବା ବ୍ୟତୀତ ସେ ବିଭିନ୍ନ ହାକିମଙ୍କୁ ଶୃଗାଳ, ବାନ୍ଦର, ମୂଷିକ, ମେଷ, କଙ୍ଗାରୁ, ଓଟ, ବେଙ୍ଗ ପ୍ରଭୃତି ଜନ୍ତୁଙ୍କ ସହିତ ତୁଳନା କରିଛନ୍ତି ।

ହାକିମଙ୍କର ଆନୁସଙ୍ଗିକଭାବେ ସଦା ଆବଶ୍ୟକ କିରାଣିମାନଙ୍କୁ ମଧ୍ୟ ସେ ବ୍ୟଙ୍ଗାତ୍ମକ ଭାବରେ ବର୍ଣ୍ଣନା କରିଛନ୍ତି । ସେ ଲେଖିଛନ୍ତି, ''କିରାଣିମାନେ ଚୁରକିଚୁଟିଶୋଭିତ । ସ୍ତ୍ରୀ-ସ୍ୱାଧୀନତାର ପକ୍ଷପାତୀ । ବର୍ଷରେ ଦଶହରା, ବଡ଼ଦିନ ଛୁଟିରେ ଗାଁକୁ ଆସନ୍ତି । ଗାଁର କିଛି ଲୋକଙ୍କୁ ନିଜ ସିରସ୍ତାରେ ପିଆଦା ଚାକିରିରେ ବି ରଖେଇଦେଇପାରନ୍ତି । ସେମାନେ ସମ୍ଭ୍ରାନ୍ତ, ସମ୍ମାନାସ୍ପଦ, ନୀତିବାନ୍ । ଉପର ଫଳାଗୁଡ଼ାକର ସଂଚାଳକ । ସେମାନଙ୍କର ଗଉଁ ହିଁ ସବୁଠାରୁ ଅଧିକ । ସେମାନେ ସାହେବଙ୍କ ତଳ ହେଲେ ବି ସାହେବ, ହାକିମ, ସମାଜର ଅସଲ ନିୟନ୍ତ୍ରକ, ଆପଣାର ନୀଳବର୍ଣ୍ଣ ବେଶ ଦେଖି ପୁଲକିତ ଗୁଡ଼ିଏ ମାଟିଆ ଶୃଗାଳ ।

ଓକିଲ, ହାକିମ, କିରାଣିମାନଙ୍କ ସହ କଚେରିର ପରିବେଶର ଏହି ଧାରଣା ଧରି ସେ ଜୀବନର ଶେଷ ପର୍ଯ୍ୟନ୍ତ ଆଇନ ବ୍ୟବସାୟ କରୁଥିଲେ ଏବଂ ଜଣେ ବିଶିଷ୍ଟ ଓକିଲ ହୋଇଥିଲେ । ନିଜର ଦୈନନ୍ଦିନ ଅନୁଭୂତିରୁ ସେ ଓକିଲ, ହାକିମ, କିରାଣି ପ୍ରଭୃତିଙ୍କ ବିଷୟରେ ଏପରି ଧାରଣା କରିଥିଲେ । ନିଜକୁ ମଧ୍ୟ ଗୋଳିଆ ପାଣିର ଓଧ ବୋଲି କହୁଥିଲେ । ଏଠାରେ ତାଙ୍କର ସମାଜର ବିଭିନ୍ନ ଶ୍ରେଣୀର ଲୋକମାନଙ୍କ ଚରିତ୍ର, ଚାଲିଚଳଣି ଏବଂ କାର୍ଯ୍ୟ ନିରୀକ୍ଷଣ ଓ ପର୍ଯ୍ୟାଲୋଚନା, ବିଭିନ୍ନ ପ୍ରକାର ପଶୁପକ୍ଷୀଙ୍କର ବ୍ୟବହାର ଓ ଗତିବିଧି ବିଷୟରେ ଜ୍ଞାନ ଏବଂ ମନୁଷ୍ୟଚରିତ୍ରକୁ ବିବିଧ ପ୍ରକାର ଜନ୍ତୁଙ୍କ ବ୍ୟବହାର ସହିତ ବ୍ୟଙ୍ଗାତ୍ମକ ତୁଳନା କରିବାର ଯଥାର୍ଥତା ଲକ୍ଷ୍ୟ କରିବାର କଥା ।

ଆଇନ ବ୍ୟବସାୟ ବ୍ୟତୀତ ପୈତୃକ ଜମିଦାରି ଏବଂ ଜମିବାଡ଼ି ତାଙ୍କର ଆୟର ଅନ୍ୟ ସୂତ୍ର ଥିଲା । ଜମିଦାରି ତାଙ୍କ ଏକାନ୍ନବର୍ତ୍ତୀ ବିରାଟ ପରିବାରର ତିନି ପୁରୁଷର ସମ୍ପତ୍ତି ଥିଲା ଏବଂ ପରିବାରର ବହୁ ପରିମାଣ ଜମି ରୟତମାନଙ୍କ ଦ୍ୱାରା ଚାଷକରାଯାଉଥିଲା । ତାଙ୍କର ପିତା ନରସିଂହ ପ୍ରହରାଜ ବଞ୍ଚିଥିବା ସମୟରେ ମଧ ସମ୍ପତ୍ତି ବିଷୟରେ ଭାଇବିରାଦର ଏବଂ ରୟତମାନଙ୍କ ସହିତ ବାଦବିବାଦ ଲାଗୁଥିଲା । ନରସିଂହ ପ୍ରହରାଜଙ୍କର ୧୯୧୪ ମସିହାରେ

ମୃତ୍ୟୁ ପରେ, ୧୯୧୫ ମସିହାରେ ତାଙ୍କର ଭାଇମାନେ ଅଲଗା ହୋଇଯାଇଥିଲେ । ସେତେବେଳକୁ ତାଙ୍କର ସାତଭାଇ ଏବଂ ଆଠ ଭଉଣୀ ଥିଲେ । ସମ୍ପତ୍ତି ଭାଗହୋଇଯିବା ପରେ ସେ ଗାଁର ପଶ୍ଚିମ ମୁଣ୍ଡରେ ଗୋଟିଏ ନୂତନ ପକ୍କାଘର କରି ସେଠାକୁ ଉଠିଆସିଥିଲେ ।

ସମ୍ପତ୍ତି ପରିଚାଳନାରେ ସାହାଯ୍ୟ କରିବା ପାଇଁ ତାଙ୍କ ଘରେ ଅନେକ ଗୁମାସ୍ତା ଓ ଚାକରବାକର ଥିଲେ । ପୈତୃକ ସମ୍ପତ୍ତି ଭାଗହୋଇଯିବା ପରେ ସେ ପ୍ରାୟ ଦଶ-ବାର ବର୍ଷ ନିଜେ ନିୟମିତ ଭାବରେ ଗାଁକୁ ଯାଇ ସମ୍ପତ୍ତିବାଡ଼ିର ପରିଚାଳନା କରୁଥିଲେ । ଯେତେବେଳେ ସେ ଭାଷାକୋଷ ସଂକଳନରେ ଅଧିକାଂଶ ସମୟ କଟାଇଲେ, ସେତେବେଳେ ସେ ସମ୍ପତ୍ତିର ପରିଚାଳନା ଭାର ତାଙ୍କ ପତ୍ନୀ ଓ ପୁଅଙ୍କ ଉପରେ ଛାଡ଼ିଦେଇଥିଲେ । ସେତେବେଳେ ସେ ଅତି ଅଳ୍ପ ଥର ଗାଁକୁ ଯାଉଥିଲେ । ଶେଷ ଅବସ୍ଥାରେ ଯେତେବେଳେ ତାଙ୍କ ପତ୍ନୀ ଓ ପୁଅଙ୍କ ସହିତ ମନୋମାଳିନ୍ୟ ଏବଂ ନାନାପ୍ରକାର ମକଦ୍ଦମା ହେଲା, ସେ କ୍ୱଚିତ୍ ଗାଁକୁ ଯାଉଥିଲେ । ପରିବାର ପ୍ରତି ବିତୃଷ୍ଣା ଓ ଜିଦ୍ ହେତୁ ଶେଷରେ ଦିନେ କଟକରୁ ବହୁଲୋକଙ୍କୁ ନେଇ ଗାଁରେ ସେ ନିଜେ ତିଆରିକରାଇଥିବା କୋଠାଘରକୁ ଭଙ୍ଗାଇଦେଇଥିଲେ; ମାତ୍ର ତାଙ୍କର ଇଚ୍ଛାପତ୍ରରେ ଗାଁର ସମସ୍ତ ସମ୍ପତ୍ତିକୁ ସେ ତାଙ୍କର ଓ୍ୱାରସମାନଙ୍କୁ ଦେଇଥିଲେ ।

## (ଖ) ରାଜନୀତି ଓ ଦେଶସେବା –

୧୯୦୨ ମସିହାରେ ଯେତେବେଳେ ପ୍ରହରାଜ ଆଇନ ଶିକ୍ଷା ଶେଷକରି ଆଇନ ବ୍ୟବସାୟ ଆରମ୍ଭ କରିଥିଲେ, ସେତେବେଳକୁ ଓଡ଼ିଶାର ସମସ୍ତ ଶିକ୍ଷିତ ଓ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଓଡ଼ିଆମାନଙ୍କର ଗୋଟିଏ ସମସ୍ୟା ସର୍ବପ୍ରଧାନ ବୋଲି ସ୍ୱୀକୃତିଲାଭ କରିଥିଲା । ଓଡ଼ିଶାର ଅତୀତ ଇତିହାସ ଗୌରବମୟ ଥିଲା ଏବଂ ଅତୀତରେ ଭାରତଭୂମିରେ ଓଡ଼ିଆମାନେ ଏକ ବିଶାଳ ଭୂଖଣ୍ଡରେ ବସତି ସ୍ଥାପନ କରି ଧନ, ଜନ, ବାଣିଜ୍ୟ, ସଂସ୍କୃତି, କଳା ଓ ସ୍ଥାପତ୍ୟରେ ଦେଶବିଦେଶରେ ଖ୍ୟାତି ଅର୍ଜନ କରିଥିଲେ । ମାତ୍ର ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରୁ ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଆଫଗାନ, ମୋଗଲ, ମରହଟ୍ଟା ଓ ବ୍ରିଟିଶ ରାଜତ୍ୱକାଳରେ ସେମାନେ ଛିନ୍ନଭିନ୍ନ ହୋଇ ଭାରତର ବିଭିନ୍ନ ପ୍ରଦେଶରେ ରହିଯାଇଥିଲେ ଏବଂ ସେମାନଙ୍କର ଆର୍ଥିକ ଅବସ୍ଥା, ସଂସ୍କୃତି, ଭାଷା, ସାହିତ୍ୟ ପ୍ରଭୃତି ସମସ୍ତ ବିଷୟ ଚରମ ଅଧୋଗତିରେ ପହଞ୍ଚିଥିଲା । ତାର ପ୍ରତିକ୍ରିୟାରେ ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ଜନଜାଗରଣ ସୃଷ୍ଟି ହୋଇଥିଲା ଏବଂ ସେହି ସମୟରେ ଜନ୍ମଲାଭ କରିଥିବା ଓଡ଼ିଶାର ବରପୁତ୍ରଗଣ ଓଡ଼ିଆମାନଙ୍କର ଏକତ୍ରୀକରଣ ଏବଂ ମାତୃଭୂମିର ପୂର୍ବ-ଗୌରବର ପୁନରୁଦ୍ଧାର କରିବା ପାଇଁ ଜାଗ୍ରତ ହୋଇଥିଲେ ।

୧୮୬୬ ମସିହା ପରଠାରୁ ଓଡ଼ିଆ ଭାଷା ରକ୍ଷାକରିବା ଏବଂ ଓଡ଼ିଆମାନଙ୍କର ସ୍ୱାଭିମାନ ଜାଗ୍ରତ କରିବା ପାଇଁ ଆନ୍ଦୋଳନ ଆରମ୍ଭ ହୋଇଥିଲା ଏବଂ ୧୮୮୦ ମସିହା ପରଠାରୁ ମଧୁସୂଦନ ଦାସଙ୍କ ନେତୃତ୍ୱରେ ସମସ୍ତ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ ନିମିତ୍ତ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଗୋପାଳଚନ୍ଦ୍ର ପ୍ରହରାଜ ଯେଉଁ ବର୍ଷ ମଧୁବାବୁଙ୍କର ସହଯୋଗୀ ଓକିଲରୂପେ ଯୋଗଦେଇଥିଲେ, ତା'ର ପରବର୍ଷ ୧୯୦୩ ମସିହାରେ

ଗଞ୍ଜାମର ରମ୍ଭାଠାରେ ଓଡ଼ିଆଭାଷୀ ଅଞ୍ଚଳମାନଙ୍କର ଏକତ୍ରୀକରଣ ନିମିତ୍ତ ଗଞ୍ଜାମ ଜାତୀୟ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ସେଥିରେ ମଧୁବାବୁଙ୍କ ସହିତ ଗୋପାଳ ଚନ୍ଦ୍ର ପ୍ରହରାଜ ଯୋଗଦେଇଥିଲେ ।

ସେହି ବର୍ଷ ଡିସେମ୍ବର ମାସ ଶେଷରେ ମଧୁବାବୁଙ୍କ ଉଦ୍ୟମରେ 'ଉତ୍କଳ ସମ୍ମିଳନୀ' ଗଠିତ ହୋଇ କଟକରେ ତାହାର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଯୁବକ ଗୋପାଳ ପ୍ରହରାଜ ସେ ସମ୍ମିଳନୀର ଜଣେ ବିଶିଷ୍ଟ ଉଦ୍ୟୋକ୍ତା ଥିଲେ । ସେ ଓଡ଼ିଆମାନଙ୍କର ସମସ୍ତ ସମସ୍ୟା ଭଲଭାବରେ ବୁଝିପାରିଥିଲେ ଏବଂ ସମ୍ମିଳନୀର ସମସ୍ତ କାର୍ଯ୍ୟକ୍ରମ ସହିତ ସଂଶ୍ଳିଷ୍ଟ ଥିଲେ । ସମ୍ମିଳନୀରେ ଫକୀରମୋହନ, ବିଶ୍ୱନାଥ କର, ଗଙ୍ଗାଧର ମେହେର, ରାଧାନାଥ ରାୟ ପ୍ରଭୃତି ଉତ୍କଳର ତତ୍‌କାଳୀନ ସମସ୍ତ ଜନନେତା, କବି, ଲେଖକ ଓ ରାଜା ମହାରାଜାମାନଙ୍କ ସହିତ ସେ ପରିଚିତ ହୋଇଥିଲେ । ସେମାନେ ସମସ୍ତେ ମଧୁବାବୁଙ୍କ ଯୁବକ ସହଯୋଗୀ ଗୋପାଳ ପ୍ରହରାଜଙ୍କୁ ଜଣେ ନିର୍ଭୀକ, ଯୋଗ୍ୟ, ଜାତିପ୍ରେମୀ ଯୁବନେତା ବୋଲି ଅନୁଭବ କରିଥିଲେ । ପ୍ରହରାଜ ସେତେବେଳେ ମଧୁବାବୁଙ୍କର ଜାତିପ୍ରେମୀଙ୍କୁ ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇଥିଲେ । ମଧୁବାବୁଙ୍କ ପରି ପ୍ରାକୃତିକ ଉତ୍କଳର ଏକତା ସ୍ଥାପନ, ଉତ୍କଳର ସର୍ବାଙ୍ଗୀଣ ଉନ୍ନତିସାଧନ ଏବଂ ଓଡ଼ିଶା ବାହାରେ ଥିବା ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷା ତାଙ୍କର ଲକ୍ଷ୍ୟ ଥିଲା । ଓଡ଼ିଆମାନଙ୍କ ମଧ୍ୟରେ ଜାତୀୟତା ଭାବ ଜାଗରଣ, ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ଦ୍ୱାରା ସମସ୍ତ ଓଡ଼ିଆ ଅଞ୍ଚଳମାନଙ୍କୁ ଏକ ଶାସନାଧୀନ କରିବା ଏବଂ ଉତ୍କଳର କୃଷି, ଶିଳ୍ପ, ବାଣିଜ୍ୟ, ଶିକ୍ଷା ଓ ସାହିତ୍ୟର ଉନ୍ନତ କରି ରାଜ୍ୟକୁ ଉନ୍ନତି ପଥରେ ଅଗ୍ରସର କରାଇବାପାଇଁ ଉପାୟ ନିରୂପଣ କରିବା ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ଥିଲା । ପ୍ରହରାଜ ପ୍ରଥମରୁ ଚିନ୍ତାକରିଥିଲେ ଯେ, ବ୍ୟକ୍ତିଗତ ସ୍ୱାର୍ଥ ତ୍ୟାଗକରି ମିଳିତଭାବେ ଜାତିର ଉନ୍ନତି ପାଇଁ କାର୍ଯ୍ୟ କଲେ ଏହି ଉଦ୍ଦେଶ୍ୟ ସଫଳ ହୋଇପାରିବ । ଏହି ଭାବନାରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ସବୁ ନେତା ଉଲ୍ଲାସ ଓ ଉନ୍ମାଦନା ଅନୁଭବ କରିଥିଲେ । ପ୍ରହରାଜ ମଧ୍ୟ ସେହି ଉନ୍ମାଦନାରେ ଉଦ୍‌ବୁଦ୍ଧ ହୋଇଥିଲେ ।

ମାତ୍ର ଅଳ୍ପ କାଳ ପରେ ସେ ଉନ୍ମାଦନା ଶିଥିଳ ହୋଇଯାଇଥିଲା । ୧୯୦୬ ମସିହା ପରେ କିଛି କାଳ ସମ୍ମଳନୀର ନେତାମାନଙ୍କ ମଧ୍ୟରେ ବାଦବିବାଦ ଓ ସମ୍ମିଳନୀର କାର୍ଯ୍ୟପଦ୍ଧତି ଦେଖି ମଧୁବାବୁ ମଧ ମ୍ରିୟମାଣ ହୋଇଥିଲେ । ପ୍ରହରାଜ ସମ୍ମିଳନୀର କାର୍ଯ୍ୟ- କଳାପରେ ଅସନ୍ତୁଷ୍ଟ ହୋଇ ସମ୍ମିଳନୀର ନେତାମାନଙ୍କୁ କଟୁ ସମାଲୋଚନା କରିଥିଲେ । ସେତେବେଳେ ସେ ଲେଖିଥିଲେ, ''ଓଡ଼ିଆଜାତି ବଂଶମରା ଡାହୁକ; ଭାରତର ଅନ୍ୟ ଜାତିମାନଙ୍କ ସହ ସମକକ୍ଷ ହୋଇନାହିଁ । ଓଡ଼ିଆମାନେ ଆତ୍ମଶାସନର ଉପଯୁକ୍ତ ହୋଇ ନାହାନ୍ତି । ସେମାନେ ଅଜ୍ଞ, ଉଦାସୀନ, ଭୀରୁ, ସାନ୍ନିପାତିକ ରୋଗରେ ଆକ୍ରାନ୍ତ । 'ଉତ୍କଳ ସମ୍ମିଳନୀ' କେବଳ ରାଜା, ମହାରାଜା, ଜମିଦାର, ଶିକ୍ଷିତମାନଙ୍କର ଗୋଟିଏ ମେଳଣ ମଞ୍ଚ । ସେଠି କେବଳ ଭାଷଣର ଆତସବାଜିର ପ୍ରତିଯୋଗିତା ଚାଲେ, ପ୍ରସ୍ତାବମାନ ଆଗତ ହୁଏ, ସ୍ୱୀକୃତି ଲାଭକରେ । କେଉଁ ରାଜା, ମହାରାଜା ବା ଜମିଦାରଙ୍କ ପ୍ରଦତ୍ତ ଅର୍ଥରେ ପେଟ ପୂରେଇ

ଯିଏ ଯୁଆଡ଼େ ଟାଳିଯାଆନ୍ତି । ଓଡ଼ିଆ ଜାତୀୟବାଦୀ ଆନ୍ଦୋଳନ ପୋଥି- ବାଇଗଣରେ ପରିଣତ ହୋଇଯାଏ; କିଛି ଫଳ ଫଳେନା । ସମସ୍ତେ କେବଳ ବଡ଼ଲୋକମାନଙ୍କର କଥାକୁ ମୁଣ୍ଡ ଟୁଙ୍ଗାରି ସ୍ୱୀକୃତି ଦିଅନ୍ତି । ଉତ୍କଳ କେତେକ ନେତାଙ୍କର ସ୍ୱୋପାର୍ଜିତ ସମ୍ପତ୍ତିର କ୍ରୀଡ଼ାସ୍ଥଳୀ ହୋଇଯାଏ ।'' ଏହି ବିରକ୍ତି ଓ ହତାଶା ଧାରଣାରେ ସେ ବହୁକାଳ ସମ୍ମିଳନୀ ପ୍ରତି ଉଦାସୀନ ରହିଗଲେ । ସେ ଓଡ଼ିଆମାନଙ୍କର ବ୍ୟକ୍ତିଗତ ଉଦ୍ୟମହୀନତା, ପର ଉପରେ ନିର୍ଭରତା ଓ ଅନୁଗ୍ରହଭିକ୍ଷା ପ୍ରବୃତ୍ତିକୁ ଘୃଣାକରୁଥିଲେ ଏବଂ ତାହାର କଟୁ ସମାଲୋଚନା କରୁଥିଲେ । ବ୍ୟକ୍ତିଗତ ଉନ୍ନତି ଓ ଉଦାରତା ବ୍ୟତୀତ ଜାତୀୟ ଉନ୍ନତିର ଆଶା ସୁଦୂରପରାହତ ବୋଲି ସେ ଭାବୁଥିଲେ ।

ବିଶେଷତଃ ସମ୍ମିଳନୀ ପରିଚାଳନାର ବହୁ ଦୋଷ-ଦୁର୍ବଳତା ଦେଖାଇ ୧୯୧୯ ମସିହା ବେଳକୁ ସେ ସେଥିରୁ ଅଲଗା ହୋଇଯାଇଥିଲେ; ମାତ୍ର ଓଡ଼ିଆଜାତିପ୍ରେମ ତାଙ୍କ ହୃଦୟରେ ସର୍ବଦା ଜାଗ୍ରତ ଥିଲା । ଓଡ଼ିଆମାନଙ୍କର ଉନ୍ନତି ପାଇଁ ଆଶାନୁରୂପ କାର୍ଯ୍ୟ ହେଉନଥିବାରୁ ଉତ୍କଳ ସମ୍ମିଳନୀ ଏବଂ ମଧୁବାବୁଙ୍କ ସମେତ ତାର ନେତାମାନଙ୍କ କାର୍ଯ୍ୟର ସେ କଟୁ ସମାଲୋଚନା କରୁଥିଲେ । ୧୯୨୦ ମସିହାରେ ଗୋପବନ୍ଧୁ ବାବୁ 'ଉତ୍କଳ ସମ୍ମିଳନୀ'କୁ ଭାରତୀୟ ଜାତୀୟ କଂଗ୍ରେସର ଏକ ଶାଖା କରିଦେବାରୁ ସେ ତାହା ସହ୍ୟ କରିପାରିନଥିଲେ । ମଧୁବାବୁ ଏବଂ ଅନ୍ୟ ବହୁ ତୁଙ୍ଗ ନେତା ସେପରି କାର୍ଯ୍ୟପନ୍ଥାକୁ ବିରୋଧ କରୁଥିଲେ । ମାତ୍ର ୧୯୩୧ ମସିହା ବେଳକୁ ଓଡ଼ିଆମାନେ ପୁଣି ଗୋଟିଏ ସଂଗଠନ ମାଧ୍ୟମରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଦାବିକରିଥିଲେ । 'ଇଉନାଇଟେଡ଼ ଓଡ଼ିଶା କନଫରେନ୍ସ' ଗଠିତ ହୋଇଥିଲା ଏବଂ ଗୋପାଳ ପ୍ରହରାଜ ପୁଣି ସେତେବେଳେ ଉତ୍କଳ ସମ୍ମିଳନୀର ମୂଳ ଧାରାକୁ ଫେରିଆସିଥିଲେ ।

'ସାଇମନ କମିଶନ୍'କୁ ଜାତୀୟ କଂଗ୍ରେସ ବିରୋଧ କରିଥିଲା; ମାତ୍ର ଓଡ଼ିଶାର ସ୍ୱାର୍ଥ-ଦୃଷ୍ଟିରୁ ଗୋପାଳ ପ୍ରହରାଜ, ବିଶ୍ୱନାଥ କର, ବ୍ରଜସୁନ୍ଦର ଦାସ, ଭିକାରି ଚରଣ ପଟ୍ଟନାୟକ ପ୍ରଭୃତି 'ଦି ଓଡ଼ିଶା ଲିବରାଲ୍ ଲିଗ୍' ପକ୍ଷରୁ ସାଇମନ କମିଶନ୍ ପାଖରେ ସ୍ୱତନ୍ତ୍ର ପ୍ରଦେଶ ପାଇଁ ଓଡ଼ିଆମାନଙ୍କର ଦାବି ଉପସ୍ଥାପିତ କରିଥିଲେ; ମଧୁବାବୁ ମଧ ତାହାକୁ ସମର୍ଥନ କରିଥିଲେ । ୧୯୩୪ ମସିହାରେ ମଧୁବାବୁଙ୍କ ତିରୋଧାନ ପରେ ପ୍ରହରାଜ ଉତ୍କଳ ସାହିତ୍ୟ ପତ୍ରିକାରେ 'ମଧୁ-ତର୍ପଣ' ପ୍ରସଙ୍ଗରେ ତାଙ୍କୁ ଉତ୍କଳର କୁଳବୃଦ୍ଧ ଏବଂ ନବ ଉତ୍କଳର ନିର୍ମାତା ବୋଲି ବର୍ଣ୍ଣନା କରିଥିଲେ । ତାଙ୍କୁ ବଙ୍ଗଳାର ସୁରେନ୍ଦ୍ରନାଥ ବାନାର୍ଜୀଙ୍କ ସହିତ ତୁଳନା କରିଥିଲେ । ୧୯୩୬ ମସିହାରେ ମଧ ସେ ନୂତନ ଓଡ଼ିଶା ପ୍ରଦେଶ ଗଠନକୁ ସ୍ୱାଗତ କରିଥିଲେ ।

ପ୍ରହରାଜଙ୍କ କର୍ମଜୀବନର, ବିଶେଷତଃ ୧୯୨୧ ମସିହାଠାରୁ ୧୯୪୫ ମସିହା ପର୍ଯ୍ୟନ୍ତ, ଉତ୍କଳ ସମେତ ଭାରତର ସବୁ ପ୍ରଦେଶରେ କଂଗ୍ରେସ ସଂଗଠନ ମାଧ୍ୟମରେ ସ୍ୱାଧୀନତା ଆନ୍ଦୋଳନ ସର୍ବପ୍ରଧାନ ଘଟଣା ଥିଲା । ଭାରତର ସବୁ ଅଞ୍ଚଳରେ ନେତୃସ୍ଥାନୀୟ ଲୋକମାନେ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ଇଂରେଜ ଶାସନ ବିରୋଧୀ ସ୍ୱାଧୀନତା

ଆନ୍ଦୋଳନରେ ଯୋଗଦେଇଥିଲେ । ଭାରତର ସବୁ ଅଞ୍ଚଳରେ ସାଧାରଣ ଜନତା ଜାତୀୟ ସ୍ୱାର୍ଥରେ ଇଂରେଜ ସରକାର ବିରୋଧରେ କଂଗ୍ରେସ ଆନ୍ଦୋଳନକୁ ସମର୍ଥନ କରୁଥିଲେ । ମାତ୍ର ଏହି ସମୟରେ ଗୋପାଳ ପ୍ରହରାଜ ଇଂରେଜ ସରକାରଙ୍କର ପ୍ରଶଂସକ ଥିଲେ ଏବଂ କଂଗ୍ରେସ ଆନ୍ଦୋଳନକୁ ବିରୋଧ କରୁଥିଲେ । ଜାତୀୟତାବାଦୀମାନେ ତାଙ୍କୁ ଇଂରେଜମାନଙ୍କର ଗୁଣମୁଗ୍ଧ ସ୍ତାବକ ଏବଂ ଜାତୀୟ ସ୍ୱାର୍ଥର ପରିପନ୍ଥୀ ବୋଲି ବର୍ଣ୍ଣନା କରୁଥିଲେ ।

୧୯୧୦ ମସିହା ପୂର୍ବରୁ ପ୍ରହରାଜ ଇଂରେଜମାନଙ୍କୁ ନିନ୍ଦା କରୁଥିଲେ ଏବଂ ଭାରତୀୟମାନଙ୍କ ଦାସତ୍ୱ ମନୋବୃତ୍ତିକୁ ବିରୋଧ କରୁଥିଲେ । ସେ କହୁଥିଲେ ଯେ, ନ୍ୟାୟର ଦ୍ୱାହି ଦେଇ ଇଂରେଜମାନେ କଳାଲୋକମାନଙ୍କ ଉପରେ ଅତ୍ୟାଚାର କରୁଛନ୍ତି । ସେମାନଙ୍କର ସ୍ୱାର୍ଥସାଧନ ପାଇଁ ଭାରତବାସୀଙ୍କ ସ୍ୱାର୍ଥ ପ୍ରତି ଭ୍ରୂକ୍ଷେପ କରୁ ନାହାନ୍ତି । ଭାରତୀୟମାନଙ୍କୁ ସେମାନଙ୍କର ଚାକର ଓ ମଜୁରିଆ ବୋଲି ଭାବୁଛନ୍ତି । ଭାରତୀୟମାନଙ୍କ ମଧ୍ୟରେ ଭେଦଭାବ ଜନ୍ମାଇ ସେମାନଙ୍କୁ ଚିରକାଳ ଶାସନ କରିବାକୁ ଚାହୁଁଛନ୍ତି । ମାତ୍ର ପରେ ଭାରତୀୟମାନଙ୍କର ସଂକୀର୍ଣ୍ଣତା, ଭେଦଭାବ ଓ ସ୍ୱାର୍ଥପରତା ଅନୁଭବ କରି ସେମାନେ ସ୍ୱାୟତ୍ତଶାସନ ପାଇଁ ଅନୁପଯୁକ୍ତ ବୋଲି ସେ ଯୁକ୍ତି କଲେ । ତଥାପି ସ୍ୱାୟତ୍ତଶାସନର ପ୍ରଥମ ସ୍ତରରେ ସେ ଜିଲ୍ଲାବୋର୍ଡ଼ ଏବଂ ମ୍ୟୁନିସିପାଲିଟିର ସଭ୍ୟ ହୋଇଥିଲେ । ମାତ୍ର ବିହାର ଓଡ଼ିଶା ଲେଜିସ୍ଲେଟିଭ୍ କାଉନ୍‌ସିଲର ସଭ୍ୟ ହେବାପାଇଁ ଉଦ୍ୟମ କରି ବିଫଳ ହୋଇଥିଲେ । ତାଙ୍କର ବିଫଳତା ପାଇଁ ସେ ମଧୁବାବୁଙ୍କୁ ଦୋଷଦେଉଥିଲେ ।

ମାତ୍ର ୧୯୨୧ ମସିହା ଅସହଯୋଗ ଆନ୍ଦୋଳନ ସମୟରୁ ସେ କଂଗ୍ରେସ ସଂଗଠନକୁ ପୂର୍ଣ୍ଣ ବିରୋଧ କରୁଥିଲେ ମଧ ମହାତ୍ମା ଗାନ୍ଧି ଏବଂ ଗାନ୍ଧିଙ୍କ ପରି ସ୍ୱାର୍ଥତ୍ୟାଗୀ ନେତାମାନଙ୍କୁ ସମାଲୋଚନା କରୁ ନ ଥିଲେ । କିନ୍ତୁ ଗାନ୍ଧିଙ୍କ ନାମ ଧରି ଅଲଗା ବାଟରେ ଯାଉଥିବା ଲୋକମାନଙ୍କର କଟୁ ସମାଲୋଚନା କରୁଥିଲେ । ସେ କହୁଥିଲେ – ଉପରେ ନୀତି ଓ ଆଦର୍ଶର ପତାକା ଧରି ଭିତରେ ମାଡ଼ପିଟ୍ ଏବଂ କଳିକଜିଆ କରିବା ଭାରତୀୟମାନଙ୍କର ପ୍ରକୃତି । ତାଙ୍କ ମତରେ କଂଗ୍ରେସର ବହୁଲୋକ ଗାନ୍ଧିଙ୍କ ଆଦର୍ଶକୁ ନେଇ ବେପାର କରୁଥିଲେ । ସ୍ୱାଧୀନତା, ସ୍ୱରାଜ୍ୟ, ଅସହଯୋଗ ଏବଂ ବିଦେଶୀ-ବର୍ଜନ ନାମ ଧରି ସେମାନେ ନିରାପଦ ଭାବରେ ନିଜର ସ୍ୱାର୍ଥସାଧନ କରୁଥିଲେ । ସେ କହୁଥିଲେ – କଂଗ୍ରେସର ମତି ଠିକ୍ ନାହିଁ । ଅସହଯୋଗ ଓ ଆଇନ୍-ଅମାନ୍ୟ ଦୁଇଟିଯାକ ଦେଶର ଅନିଷ୍ଟ ଛଡ଼ା ଇଷ୍ଟ କରିବନାହିଁ । ସ୍ୱାର୍ଥପର, ଉଚ୍ଛୃଙ୍ଖଳ ଓ ଉଦ୍ଧତ ବ୍ୟକ୍ତିମାନଙ୍କ ସମାହାରରେ ଗଠିତ କଂଗ୍ରେସଦଳର ପତନ ସୁନିଶ୍ଚିତ । ଏହିପରି ଭାବରେ ସତ୍ୟ ସମାଚାରରେ ପ୍ରହରାଜ ଓ ବିଶ୍ୱନାଥ କର କଂଗ୍ରେସ ଲୋକମାନଙ୍କ ବିରୋଧରେ ବିଷୋଦ୍‌ଗାର କରୁଥିଲେ ଏବଂ ସେଥି ସଙ୍ଗେ ସଙ୍ଗେ ଇଂରେଜମାନଙ୍କର ପ୍ରଶସ୍ତି ଗାନ କରୁଥିଲେ ।

ଭାରତର ଜାତୀୟ ଆନ୍ଦୋଳନକୁ ଏପରିଭାବରେ ସମାଲୋଚନା କରିବା ଏବଂ ଭାରତରେ ଇଂରେଜ ଶାସନକୁ ସମର୍ଥନ କରିବା ହେତୁ ଜାତୀୟବାଦୀମାନେ ତାଙ୍କୁ ଦେଶଦ୍ରୋହୀ, ଜାତିଦ୍ରୋହୀ, ଛିଦ୍ରାନ୍ୱେଷୀ କୀଟ ବୋଲି କହୁଥିଲେ । ପ୍ରହରାଜ ସେ ସମୟରେ

କଂଗ୍ରେସକୁ ସମାଲୋଚନା ଏବଂ ବ୍ରିଟିଶ ସରକାର ଓ ସରକାରଙ୍କ ସମର୍ଥକ ରାଜା, ମହାରାଜା ଓ ଜମିଦାରମାନଙ୍କର ପ୍ରଶସ୍ତିଗାନ କରିବାରେ ତାଙ୍କର ଗୋଟିଏ ସ୍ୱାର୍ଥ-ଜଡ଼ିତ ଉଦ୍ଦେଶ୍ୟ ଥିଲା ବୋଲି ବହୁ ଲୋକ ଅନୁଭବ କରୁଥିଲେ । ସେତେବେଳେ ପ୍ରହରାଜ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ପ୍ରକାଶ କରିବା ପାଇଁ ଅର୍ଥ ସଂଗ୍ରହ ନିମିତ୍ତ ବହୁ ଉଚ୍ଚପଦସ୍ଥ ବ୍ରିଟିଶ ଅଫିସର ଏବଂ ରାଜା, ମହାରାଜାମାନଙ୍କର ଦ୍ୱାରସ୍ଥ ହୋଇଥିଲେ । ସେ ଯାହାହେଉ, ୧୯୨୧ ମସିହାଠାରୁ ତାଙ୍କର ଶେଷ ଜୀବନ ପର୍ଯ୍ୟନ୍ତ ସେ କଂଗ୍ରେସ ସଂଗଠନର ବିରୋଧୀ ଥିଲେ; ମାତ୍ର ସେ ଦେଶଦ୍ରୋହୀ କିମ୍ବା ଜାତିଦ୍ରୋହୀ ନ ଥିଲେ । ଭାରତୀୟମାନଙ୍କୁ କିମ୍ବା ଓଡ଼ିଆମାନଙ୍କୁ ସମାଲୋଚନା ତାଙ୍କର ଆତ୍ମ-ସମୀକ୍ଷା ଓ ଆତ୍ମ-ସମାଲୋଚନା ଥିଲା । ଜଣେ ଭାରତୀୟ ଏବଂ ଓଡ଼ିଆ ହିସାବରେ ସେ ନିଜେ ମଧ୍ୟ ସେହି ସମାଲୋଚନାର ଶରବ୍ୟ ଥିଲେ । ସେ ନିଜକୁ ଜାତିଠାରୁ ଅଲଗା ରଖିନଥିଲେ । ଜାତିର ସଂସ୍କୃତି, ସଂକୀର୍ଣ୍ଣତା, ଆଚାର-ବ୍ୟବହାରର ସଂସ୍କାର ପାଇଁ ଏବଂ ପୃଥିବୀର ଅନ୍ୟ ଉନ୍ନତ ଜାତିମାନଙ୍କର ସମକକ୍ଷ ହେବା ପାଇଁ ସେ ସବୁବେଳେ ନିଜ ଜାତିକୁ କଟୁ ସମାଲୋଚନା କରୁଥିଲେ । ସେ ଗୋଟିଏ ପରିପୂର୍ଣ୍ଣ, ସମୃଦ୍ଧ, ଉନ୍ନତ ଓ ଆଦର୍ଶ ଭାରତୀୟ ସମାଜ ଗଠନର ସ୍ୱପ୍ନ ଦେଖୁଥିଲେ ।

## (ଗ) ସାହିତ୍ୟ କୃତି ଓ ସାହିତ୍ୟସେବା –

ଗୋପାଳ ଚନ୍ଦ୍ର ପ୍ରହରାଜଙ୍କର ସାହିତ୍ୟ-ସୃଜନୀ ପ୍ରତିଭାର ଉନ୍ମେଷ ହୋଇଥିଲା ତାଙ୍କର ବାଲ୍ୟକାଳରେ । ୧୮୮୫ ମସିହାରେ ତାଙ୍କ ମା'ଙ୍କର ମୃତ୍ୟୁ ପରେ ସେ ତାଙ୍କ ପ୍ରଥମ କବିତା 'ମାତୃବିୟୋଗ' ଲେଖିଥିଲେ । ସେତେବେଳେ ତାଙ୍କୁ ମୋଟେ ଏଗାର ବର୍ଷ ବୟସ ହୋଇଥିଲା । ପିଲାଦିନୁ ମଧ ତାଙ୍କର ଗାଉଁଲି ଭାଷାରେ ଲେଖିବା ପ୍ରବୃତ୍ତି ଜାତହୋଇଥିଲା । ମଧ-ଭର୍ଣ୍ଣାକୁଲାର ସ୍କୁଲରେ ପଢୁଥିବାବେଳେ ସେ 'ଆଖ୍ୟାନ ମଞ୍ଜରୀ' ବହିରୁ ଅନେକ ପ୍ରବନ୍ଧ ତାଙ୍କ ମାଆ ଏବଂ ବଡ଼ବୋଉଙ୍କ ପାଖରେ ପଢ଼ି ଶୁଣାଉଥିଲେ । ମାତ୍ର ବହିର ଭାଷା ସେମାନେ ମୋଟେ ବୁଝିପାରୁନଥିଲେ । ସେହି କାଳରୁ ତାଙ୍କର କିଛି ଧାରଣା ହୋଇଥିଲା ଯେ, ବହିର ଭାଷା ଘରେ କହିବା ଭାଷାଠାରୁ ଭିନ୍ନ । ହାସ୍ୟରସ ସୃଷ୍ଟି କରିବା ଏବଂ ଅନ୍ୟମାନଙ୍କୁ ବ୍ୟଙ୍ଗ କରିବା ଅନେକ ଲୋକଙ୍କର ଗୋଟିଏ ପ୍ରକୃତିଦତ୍ତ ଗୁଣ । ଫକୀରମୋହନଙ୍କ ସଦୃଶ ଏପରି ଗୁଣ ଗୋପାଳ ପ୍ରହରାଜଙ୍କଠାରେ ପିଲାଦିନୁ ଥିଲା । ଫକୀରମୋହନଙ୍କ ପରେ ଓଡ଼ିଆ ସାହିତ୍ୟରେ ଲୋକମାନଙ୍କର କଥିତ ଭାଷାରେ ଗଳ୍ପ, ପ୍ରବନ୍ଧ, ସମାଲୋଚନା ଏବଂ ବ୍ୟଙ୍ଗାତ୍ମକ ଆଲୋଚନା କରିବାରେ ଗୋପାଳ ପ୍ରହରାଜ ଦ୍ୱିତୀୟ ବ୍ୟକ୍ତି ଥିଲେ । ଫକୀରମୋହନଙ୍କଠାରୁ ପ୍ରହରାଜଙ୍କର ବ୍ୟଙ୍ଗାତ୍ମକ ସମାଲୋଚନା ଅଧିକ କଟୁ ଓ ଛିଦ୍ରାନ୍ବେଷୀ ଥିଲା । କବିବର ରାଧାନାଥ ରାୟଙ୍କ ଜ୍ୟେଷ୍ଠପୁତ୍ର ଶଶିଭୂଷଣ ରାୟ ପ୍ରହରାଜଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ଥିଲେ । ଓଡ଼ିଆଭାଷାରେ ପ୍ରବନ୍ଧ-ସାହିତ୍ୟକୁ ତାଙ୍କର ବିଶେଷ ଅବଦାନ ଥିଲା ଏବଂ ଜଣେ ପ୍ରାବନ୍ଧିକ ଭାବରେ ସେ ଖ୍ୟାତିଲାଭ କରିଥିଲେ । ମାତ୍ର ତାଙ୍କର ପ୍ରବନ୍ଧମାନ ସଂସ୍କୃତଶବ୍ଦବହୁଳ, ମାର୍ଜିତ ଭାଷା ସମନ୍ୱିତ ଭାଷାରେ ଲିଖିତ । ପ୍ରହରାଜଙ୍କର ସମସ୍ତ ପ୍ରବନ୍ଧ, କାହାଣୀ, ଆଲୋଚନା କଥିତ ଗାଉଁଲିଭାଷାରେ ଲିଖିତ । ଓଡ଼ିଆଭାଷାରେ ଫକୀରମୋହନ ଏହି ଶୈଳୀ ଆରମ୍ଭ କରିଥିଲେ ।

ଗୋପାଳ ଚନ୍ଦ୍ର ପ୍ରହରାଜ ନିଜ ପ୍ରବୃତ୍ତିରୁ ସେହି ଭାଷାରେ ଲେଖିଲେ । ପ୍ରହରାଜଙ୍କ ସାହିତ୍ୟ-କୃତିକୁ ପ୍ରଶଂସା କରି ଫକୀରମୋହନ ତାଙ୍କର 'ଉତ୍କଳ ଭ୍ରମଣଂ' ବହିରେ ଲେଖିଛନ୍ତି –

''ଶିଖିବାକୁ ଇଚ୍ଛା ଥିଲା ଚଳନ୍ତି ଓଡ଼ିଆ
ସାହିତ୍ୟରେ ଭେଟିଗଲି ଗୋପାଳପୁରିଆ ।
କିମ୍ବାଇ ମରିବି ବୁଲି ଗାଏଁ ଗାଏଁ
ଭାଗବତ ଟୁଙ୍ଗିଠାରୁ ନନା ପାଞ୍ଚିଯାଏ
ଘରକଥା ଘରଭାଷା ଠିକ୍ ଠିକ୍ ଲେଖା,
ଓକିଲଙ୍କ ଠକପଣ ଲେଖାନାହିଁ ଏକା ।
ସତ ଦୁଇ-ଚାରି ପଦ ଯାଇଛନ୍ତି ଗାଇ
ତାହା ମଧ୍ୟେ ଆପଣାକୁ ବଞ୍ଚାଇ ବଞ୍ଚାଇ ।
ପାଇଲି ଅସଲି ଚିଜ ହେଉ ତାହା ଛଡ଼ା
ନିରୋଳ ଓଡ଼ିଆ କଥା ଥିଲା ମୋର ଲୋଡ଼ା ।
ପଢ଼ିଲି ସାହିତ୍ୟ ବସି ପହରେକ ଆଜ
ଠିକ ଠିକ ଗାଇଯାଇଛନ୍ତି ପ୍ରହରାଜ ।''

'ଉତ୍କଳ କାହାଣୀ' ଏବଂ 'ଭାଗବତ ଟୁଙ୍ଗିରେ ସନ୍ଧ୍ୟା'ର ଭାଷାକୁ ମଧ ପ୍ରଥମେ ରାଧାନାଥ ରାୟ ସ୍ୱାଗତ କରିଥିଲେ । ସେ ପ୍ରହରାଜଙ୍କୁ କହିଥିଲେ, ''ଗୋପାଳ, ଓଡ଼ିଆଭାଷାରେ ଆବାଳ-ବୃଦ୍ଧ-ବନିତା ବୁଝିପାରିବା ଭଳି ଭାବ ପ୍ରକାଶ କରିବା କେଡ଼େ କଷ୍ଟକର, ତାହା ମୁଁ ଗତ ତିରିଶ ବର୍ଷର ଚେଷ୍ଟା ଓ ଅନୁଭୂତିରୁ ବୁଝିସାରିଅଛି । ତୁମେ ଏଥିରେ କୃତକାର୍ଯ୍ୟ ହେବାର ଦେଖି ମୁଁ ପରମ ପରିତୋଷ ଲଭୁଛି । ମୁଁ ଅବଶ୍ୟ ସେତେ ଦିନ ବଞ୍ଚି ନ ଥିବି; କିନ୍ତୁ ମନେରଖିଥାଅ, ଦିନେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତୁମେ ଗୋଟିଏ ବିଶିଷ୍ଟ ସ୍ଥାନ ଲାଭ କରି ଯଶସ୍ୱୀ ହେବ ।''

ସେ ସମୟରେ ରାଜା ସୁବ୍ରଳ ଦେବ, ଗୌରୀଶଙ୍କର, ବୈକୁଣ୍ଠନାଥ ଦେ ପ୍ରଭୃତି ତାଙ୍କର ପ୍ରକାଶଭଙ୍ଗୀକୁ ନାପସନ୍ଦ କରୁଥିଲେ; ମାତ୍ର ବିଶ୍ୱନାଥ କରଙ୍କ ଇଙ୍ଗିତରେ କେତେକ ଓଡ଼ିଆ ଯୁବକ 'ସାନ୍ଧ୍ୟ ସମିତି' ନାମରେ ଗୋଟିଏ ସାହିତ୍ୟିକ କ୍ଲବ୍ ପ୍ରତିଷ୍ଠା କରିଥିଲେ । କବି ନନ୍ଦ କିଶୋର ବଳ, କାମପାଳ ମିଶ୍ର, ଅଭିରାମ ଭଞ୍ଜ ଏବଂ ଗୋପାଳ ଚନ୍ଦ୍ର ପ୍ରହରାଜ ତାହାର ଅଗ୍ରଣୀ ଥିଲେ । ବିଶ୍ୱନାଥ କରଙ୍କ ଦ୍ୱାରା ସଂପାଦିତ ମାସିକ 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରହରାଜଙ୍କର ଦୁନିଆଁର ହାଲଚାଲ, ଆମ ଘରର ହାଲଚାଲ, ନନାଙ୍କ ବସ୍ତାନି, ବାଇ ନାନୀର ବୁଢୁଲି, ମିଆଁ ସାହେବଙ୍କ ରୋଜନାମଚା, ଭେଜେ ବାବାଙ୍କ ଚୁଣି ମୁଣି ପ୍ରଭୃତି ପ୍ରବନ୍ଧମାନ ଧାରାବାହିକ ଭାବରେ ପ୍ରକାଶ ପାଇଥିଲା ।

ପ୍ରହରାଜ ଉପନ୍ୟାସ ଲେଖିନାହାନ୍ତି । ଶିଶୁମାନଙ୍କ ପାଇଁ କେତେଗୁଡ଼ିଏ କବିତା ଏବଂ କେତେଗୁଡ଼ିଏ ଭଜନ ବ୍ୟତୀତ ସେ କାବ୍ୟ କବିତା ଲେଖିନାହାନ୍ତି । ତାଙ୍କର ସବୁ ଲେଖା ଗାଉଁଲି ଭାଷାରେ ଲିଖିତ ଗଳ୍ପ ଓ ପ୍ରବନ୍ଧ । ତାଙ୍କ ଲିଖିତ ଗଳ୍ପ କଳ୍ପନାପ୍ରସୂତ ନୁହେଁ; ଉତ୍କଳର

ଜନଜୀବନରେ ପ୍ରଚଳିତ କାହାଣୀମାନ ସଂଗ୍ରହ କରି ସେ 'ଉତ୍କଳ କାହାଣୀ' ନାମରେ ପ୍ରକାଶ କରିଥିଲେ । ଏ କାହାଣୀମାନଙ୍କରୁ ଅଧିକାଂଶ କାହାଣୀ ସେ ପିଲାଦିନେ ତାଙ୍କ ଜେଜେମାଆଙ୍କ ଠାରୁ ଶୁଣିଥିଲେ । 'ଉତ୍କଳ କାହାଣୀ' ବ୍ୟତୀତ ତାଙ୍କର ଅନ୍ୟ ସବୁ ଲେଖା ପ୍ରବନ୍ଧ । ସେହି ପ୍ରବନ୍ଧମାନଙ୍କରେ ସେ ଉତ୍କଳର ସାମାଜିକ, ଅର୍ଥନୈତିକ, ରାଜନୈତିକ ପ୍ରଭୃତି ବହୁ ସମସ୍ୟା ଆଲୋଚନା କରିଛନ୍ତି । ଏଥିରେ ସେ ଓଡ଼ିଶାର ଗ୍ରାମ ଓ ସହରମାନଙ୍କରେ ଲୋକମାନଙ୍କର ଚଳଣି, ବିଭିନ୍ନ ଲୋକମାନଙ୍କ ଚରିତ୍ରରେ ତାରତମ୍ୟ, ଜାତିପ୍ରଥା, ନାରୀଶିକ୍ଷା, ବିଧବା-ବିବାହ, ଆଧୁନିକ ସଭ୍ୟତା, ସମାଜରେ ଦୁର୍ନୀତି, ଶିକ୍ଷିତ ଲୋକମାନଙ୍କର କପଟତା, ସ୍ୱାର୍ଥପରତା, ଖୋସାମତି, ମିଥ୍ୟାକଥନ ଓ ଛିଦ୍ରାନ୍ୱେଷଣ ପ୍ରଭୃତି ବହୁ ବିଷୟ ବ୍ୟଙ୍ଗାତ୍ମକ ଭାବରେ ଆଲୋଚନା କରିଛନ୍ତି । ସେ ଆଲୋଚନା ସବୁ ସମାଜରେ ତାଙ୍କର ନିଜର ଅନୁଭୂତି ଏବଂ ଲୋକଚରିତ୍ରର ଗଭୀର ଅନୁଧ୍ୟାନରୁ ଉଦ୍‌ଭବ ।

ତାଙ୍କର ବ୍ୟଙ୍ଗାତ୍ମକ କଠୋର ସମାଲୋଚନା ସବୁ ସଂସ୍କାରମୂଳକ । ସେ ଆଧୁନିକ ଏବଂ ପୁରାତନ ଉଭୟ ସାମାଜିକ ପ୍ରଥାର ସଂସ୍କାର ଚାହୁଁଥିଲେ । ଉଭୟ ପ୍ରଥାରୁ ଗ୍ରହଣ କରି ଆଦର୍ଶ ସମାଜ ଗଠନ କରିବାକୁ ଚାହୁଁଥିଲେ । ତାଙ୍କ ଲେଖାମାନଙ୍କରେ ଆମ ସମାଜର ରାଜା, ମହାରାଜା, ଜମିଦାର, ଧନୀ, ଦରିଦ୍ର, ଗାଁ ଓ ସହରମାନଙ୍କର ଶିକ୍ଷିତ ଓ ଅଶିକ୍ଷିତ ଲୋକଙ୍କ ଚାଲିଚଳଣି, ହିନ୍ଦୁ ଓ ମୁସଲମାନ ଧର୍ମର ଲୋକମାନଙ୍କର ବ୍ୟବହାର ପ୍ରଭୃତି ସମସ୍ତ ବିଷୟ ସ୍ଥାନପାଇଥିଲା । ସାମଗ୍ରିକ ଭାବରେ ତାଙ୍କ ଲେଖା ସମସାମୟିକ ଉତ୍କଳ ସମାଜର ଏକ ସୁସ୍ପଷ୍ଟ ଚିତ୍ର ଦିଏ । ସେ ସେସମୟର ସମାଜରେ ଯାବତୀୟ ଦୋଷ ଦୁର୍ବଳତା କଠୋର ଭାଷାରେ ସମାଲୋଚନା କରି ସେଥିରେ ସଂସ୍କାର କାମନା କରିଛନ୍ତି ।

ପ୍ରହରାଜ ୧୯୦୦ ମସିହାରେ ତାଙ୍କର କର୍ମଜୀବନ ଆରମ୍ଭରୁ ୧୯୪୫ ମସିହାରେ ତାଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ ଓଡ଼ିଶାର ଲୋକସାହିତ୍ୟ ସଂଗ୍ରହ କରି, ସମାଜର ବିଭିନ୍ନ ସମସ୍ୟାମାନଙ୍କ ଉପରେ ପ୍ରବନ୍ଧମାନ ଲେଖି 'ଉତ୍କଳ ସାହିତ୍ୟ' ଓ ଅନ୍ୟ ପତ୍ରପତ୍ରିକା ଏବଂ ପୁସ୍ତକ ଆକାରରେ ପ୍ରକାଶ କରି ଓଡ଼ିଆ ଭାଷା ଓ ସାହିତ୍ୟକୁ ସମୃଦ୍ଧ କରୁଥିଲେ । ଓଡ଼ିଆ ସାହିତ୍ୟର ଅନ୍ୟ କବି, ଔପନ୍ୟାସିକ, କଥାକାର ପ୍ରଭୃତିଙ୍କଠାରୁ ଭାଷା ଓ ସାହିତ୍ୟକୁ ତାଙ୍କର ଅବଦାନ ଭିନ୍ନ ପ୍ରକାର । 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ସଂକଳନ, ଯେଉଁଥିରେ ସେ ତାଙ୍କ ଜୀବନର ଶ୍ରେଷ୍ଠ ଭାଗ ତିରିଶ ବର୍ଷ କାଳ ଏକାଗ୍ରଚିତ୍ତରେ କାର୍ଯ୍ୟ କରିଥିଲେ, ଓଡ଼ିଆ ଭାଷା ଓ ସାହିତ୍ୟକୁ ତାଙ୍କର ସର୍ବଶ୍ରେଷ୍ଠ ଅବଦାନ । ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ପାଇଁ ସେପରି କାର୍ଯ୍ୟ ତାଙ୍କ ପୂର୍ବରୁ କିମ୍ବା ପରେ ଓଡ଼ିଶାରେ ଆଉ କୌଣସି ବ୍ୟକ୍ତି କରିନାହାନ୍ତି । ଭାଷାକୋଷ ସଂକଳନ ବ୍ୟତୀତ ଲୋକସାହିତ୍ୟ ସଂଗ୍ରହ ଏବଂ ବ୍ୟଙ୍ଗ ସାହିତ୍ୟ ରଚନା କ୍ଷେତ୍ରରେ ଓଡ଼ିଆ ସାହିତ୍ୟକୁ ତାଙ୍କର ଅବଦାନ କମ୍ ନୁହେଁ ।

ସାହିତ୍ୟିକମାନେ ସାଧାରଣତଃ ପ୍ରହରାଜଙ୍କ ସାହିତ୍ୟକୁ ନିମ୍ନଲିଖିତମତେ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରିଛନ୍ତି ।

**୧. ଲୋକସାହିତ୍ୟ –**

(କ) ଲୋକ ସାହିତ୍ୟ ସଂଗ୍ରହରେ ପ୍ରହରାଜଙ୍କର 'ଉତ୍କଳ କାହାଣୀ' ପ୍ରଥମ ଓ ଦ୍ୱିତୀୟ ଭାଗ ଏବଂ 'ଢଗଢମାଳୀ ବଚନ' ପ୍ରଥମ ଓ ଦ୍ୱିତୀୟ ଭାଗ ପ୍ରଧାନ । ଉତ୍କଳର ଜନଜୀବନରେ ପ୍ରଚଳିତ କାହାଣୀ ଓ ଢଗଢମାଳି ସଂଗ୍ରହ କରି ପୁସ୍ତକ ଆକାରରେ ପ୍ରକାଶ କରିବାରେ ସେ ପ୍ରଥମ ଲବ୍ଧପ୍ରତିଷ୍ଠ ସାହିତ୍ୟିକ । ଉତ୍କଳ କାହାଣୀର ପ୍ରଥମଭାଗ ୧୯୦୧ ମସିହାରେ ଉତ୍କଳ ସାହିତ୍ୟ ପ୍ରେସ୍‌ରୁ ପ୍ରକାଶିତ ହୋଇଥିଲା । ଏଥିରେ ଏକୋଇଶଟି କାହାଣୀ ଏବଂ ସାତ ପୃଷ୍ଠାର ମୁଖବନ୍ଧ ଥିଲା । ଓଡ଼ିଶାର ଚାରିଆଡ଼େ ପ୍ରାଥମିକ ସ୍କୁଲର ଛାତ୍ରମାନଙ୍କ ଦ୍ୱାରା ଏହା ବିଶେଷ ଭାବରେ ଆଦୃତ ହୋଇଥିଲା । ୧୯୪୬ ମସିହାରେ ଏ ପୁସ୍ତକର ଦଶମ ସଂସ୍କରଣ ପ୍ରକାଶିତ ହୋଇଥିଲା ଏବଂ ୧୯୮୭ ମସିହାରେ ଓଡ଼ିଶା ଜଗନ୍ନାଥ କମ୍ପାନୀ ଦ୍ୱାରା ଏହାର ପରିମାର୍ଜିତ ସଂସ୍କରଣ ପ୍ରକାଶିତ ହୋଇଛି ।

'ଉତ୍କଳ କାହାଣୀ'ର ଦ୍ୱିତୀୟ ଭାଗ ୧୯୨୦ ମସିହାରେ କଟକ ଟ୍ରେଡ଼ିଂ କମ୍ପାନୀ ଦ୍ୱାରା ପ୍ରକାଶିତ ହୋଇଥିଲା । ଏଥିରେ ତେର ଗୋଟି କାହାଣୀ ଥିଲା । ପରେ ଏହାର ଅନେକ ସଂସ୍କରଣ ପ୍ରକାଶିତ ହୋଇଛି । ପୁସ୍ତକ ଆକାରରେ ପ୍ରକାଶିତ ହେବା ପୂର୍ବରୁ ପ୍ରଥମ ଭାଗର କାହାଣୀଗୁଡ଼ିକ ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶିତ ହୋଇଥିଲା ଏବଂ ଦ୍ୱିତୀୟ ଭାଗର କାହାଣୀଗୁଡ଼ିକ ଉତ୍କଳ ସାହିତ୍ୟ, ମୁକୁର ଏବଂ ପଞ୍ଚାମୃତ ପ୍ରଭୃତି ପତ୍ରିକାମାନଙ୍କରେ ପ୍ରକାଶିତ ହୋଇଥିଲା । ଏପରି କାହାଣୀସବୁ ଓଡ଼ିଆ ସାହିତ୍ୟରେ ପ୍ରଥମ ।

**(ଖ) ଢଗଢମାଳି ବଚନ –** ଢଗଢମାଳି ବଚନର ପ୍ରଥମଭାଗ ୧୯୨୬ ମସିହାରେ କଟକ ଟ୍ରେଡିଂ କମ୍ପାନୀ ଦ୍ୱାରା ପ୍ରକାଶିତ ହୋଇଥିଲା । ୨୨୪ ପୃଷ୍ଠାର ଏହି ପୁସ୍ତକରେ ୨୬୦୦ ଗୋଟି ଓଡ଼ିଆ ଢଗଢମାଳି ବଚନ ଥିଲା ଏବଂ ପ୍ରହରାଜଙ୍କ ଲିଖିତ ୨୬ ପୃଷ୍ଠାର ମୁଖବନ୍ଧ ଥିଲା । ଢଗଢମାଳି ବଚନର ଦ୍ୱିତୀୟ ଭାଗ ସେହି କଟକ ଟ୍ରେଡିଂ କମ୍ପାନୀ ଦ୍ୱାରା ୧୯୨୭ ମସିହାରେ ପ୍ରକାଶିତ ହୋଇଥିଲା । ଏଥିରେ ୩୮୫୦ ପ୍ରବଚନ, ପ୍ରବାଦ, ଆପ୍ତ-ବଚନ ଓ ନ୍ୟାୟ ପ୍ରଭୃତି ଥିଲା । ଏ ବହିର ପୃଷ୍ଠାସଂଖ୍ୟା ୩୮୪ । ଢଗଢମାଳି ବଚନର ପ୍ରଥମ ଓ ଦ୍ୱିତୀୟ ଭାଗରେ ପ୍ରକାଶିତ ସମସ୍ତ ଢଗ ଓ ପ୍ରବଚନ ପ୍ରଭୃତି ଗୋପାଳ ପ୍ରହରାଜ ଓ ପୀତାମ୍ବରୀ ଦେବୀଙ୍କ ଦ୍ୱାରା ସଂକଳିତ ହୋଇଥିଲା । ଏପରି ସଂକଳନ ମଧ୍ୟ ଓଡ଼ିଆ ଭାଷାରେ ପ୍ରଥମ । ଏହାଦ୍ୱାରା ଓଡ଼ିଶାରେ ପୁରାକାଳରୁ ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରଚଳିତ ଲୌକିକ ଢଗ, ପ୍ରବାଦ, ଆପ୍ତ-ବଚନ ପ୍ରଭୃତି ଲୋକଲୋଚନକୁ ଆସିଥିଲା ।

**୨. ରମ୍ୟରଚନା –**

ପ୍ରହରାଜ ତାଙ୍କର ରମ୍ୟରଚନା ବା ହାସ୍ୟରସାତ୍ମକ ଓ ବ୍ୟଙ୍ଗାତ୍ମକ ରଚନାମାନଙ୍କ ଯୋଗୁଁ ଖ୍ୟାତି ଅର୍ଜନ କରିଥିଲେ । ଉତ୍କଳ ସାହିତ୍ୟ ପତ୍ରିକାରେ ଛଦ୍ମନାମରେ ପ୍ରକାଶିତ ଏହି ପ୍ରବନ୍ଧଗୁଡ଼ିକ ସେ ସମୟରେ ଲୋକମାନଙ୍କ ମଧ୍ୟରେ ବିଶେଷ ଆଦର ଲାଭ କରିଥିଲା । ଏହି ପ୍ରବନ୍ଧମାନଙ୍କରେ ଓଡ଼ିଶାର ସହର ଓ ଗ୍ରାମମାନଙ୍କରେ ବାସକରୁଥିବା ବିଭିନ୍ନ ଶ୍ରେଣୀ ଏବଂ ବିଭିନ୍ନ ବୃତ୍ତିର ଲୋକମାନଙ୍କର ସ୍ପଷ୍ଟ ଚିତ୍ର ବର୍ଣ୍ଣନା କରାଯାଉଥିଲା ଏବଂ ସମାଜର

ଦୋଷଦୁର୍ବଳତାକୁ ଉପହାସ କରାଯାଉଥିଲା । ଏ ଲେଖାମାନଙ୍କରେ ପଣ୍ଡିତ, ମାଷ୍ଟର, ମହାଜନ, ଜମିଦାର, ମୋକ୍ତାର, ମିଆଁ ସାହେବ, ଇଂରାଜୀପଢୁଆ ବାବୁ ପ୍ରଭୃତିଙ୍କ ଚରିତ୍ର-ଚିତ୍ରଣ, ଚାଷକଥା, କବିରାଜ ଓ ଡାକ୍ତରଙ୍କ ଚିକିତ୍ସା, ସ୍ତ୍ରୀଶିକ୍ଷା, ଓଡ଼ିଆ ଓ ଇଂରାଜୀ କବିତା ସମେତ ବହୁ ସାମାଜିକ, ଅର୍ଥନୈତିକ ଏବଂ ରାଜନୈତିକ ବିଷୟର ହାସ୍ୟରସାତ୍ମକ ଆଲୋଚନା ପାଠକମାନଙ୍କର ରୁଚିକର ହେଉଥିଲା ।

ତାଙ୍କର ରମ୍ୟରଚନା ମଧ୍ୟରେ ଭାଗବତ ଟୁଙ୍ଗିରେ ସନ୍ଧ୍ୟା, ବାଇମାହାନ୍ତି ପାଞ୍ଜି, ଦୁନିଆର ହାଲଚାଲ, ଆମ ଘରର ହାଲଚାଲ, ନନାଙ୍କ ବସ୍ତାନି, ମିଆଁ ସାହେବଙ୍କ ରୋଜନାମଚା, ବାଈ ନାନୀଙ୍କ ବୁଜୁଳି, ଦୁନିଆର ଗୀତି, ଜେଜେବୋପାଙ୍କ ଟୁଣି ମୁଣି, ସ୍ୱପ୍ନରେ ରାଜଯୋଗ, କନ୍ୟା-ଦେଖା, ବାଇଗଣ ବିକା ପ୍ରଭୃତି ପ୍ରଧାନ । ଏଗୁଡ଼ିକ ମଧ୍ୟରେ 'ଭାଗବତ ଟୁଙ୍ଗିରେ ସନ୍ଧ୍ୟା' ଏବଂ 'ବାଇ ମାହାନ୍ତି ପାଞ୍ଜି' ସବୁଠାରୁ ଅଧିକ ଜଣାଶୁଣା ।

(କ) **'ଭାଗବତ ଟୁଙ୍ଗିରେ ସନ୍ଧ୍ୟା'** ୧୯୦୩ ମସିହାରେ ଉତ୍କଳ ସାହିତ୍ୟ ପ୍ରେସରେ ପୁସ୍ତକ ଆକାରରେ ଛପା ହୋଇଥିଲା । ତାହା ପୂର୍ବରୁ ୧୯୦୧ ମସିହା ସେପ୍ଟେମ୍ବର ମାସରୁ ୧୯୦୨ ମସିହା ସେପ୍ଟେମ୍ବର ମାସ ମଧ୍ୟରେ ଉତ୍କଳ ସାହିତ୍ୟ ପତ୍ରିକାରେ ଦଶଗୋଟି ସଂଖ୍ୟାରେ ଦୁର୍ମୁଖ ଶର୍ମା ଛଦ୍ମନାମରେ ଏହି ପ୍ରବନ୍ଧଗୁଡ଼ିକ ପ୍ରକାଶିତ ହୋଇଥିଲା । ଏ ପୁସ୍ତକର ଅନେକ ସଂସ୍କରଣ ପ୍ରକାଶିତ ହୋଇଛି । ଏଥିରେ ଦଶଗୋଟି ସନ୍ଧ୍ୟାରେ ଆଲୋଚନା ସ୍ଥାନ ପାଇଛି । ଆଲୋଚନାରେ ପଣ୍ଡିତ, ମାଷ୍ଟର, ମୋକ୍ତାର, ମହାଜନ, ମସ୍ତରାମ ପାଗଳ ଓ ଶର୍ମା ପ୍ରଭୃତିଙ୍କ ପରିଚୟ ଓ ଆଳାପ ଦିଆହୋଇଛି । ତାହା ପରେ ଜମିଦାରଙ୍କ ଅବତାରଣା, ଚାଷକଥା, ସଂକୀର୍ତ୍ତନ କଥା, ହିନ୍ଦୁ ମୁସଲମାନ ଧର୍ମ ପ୍ରଭୃତି ବିଷୟରେ ବିଭିନ୍ନ ସନ୍ଧ୍ୟାରେ ଆଲୋଚନା ଦିଆଯାଇଛି । ଏହା ପ୍ରହରାଜଙ୍କ ପ୍ରଥମ ରମ୍ୟ- ରଚନା । ଗବେଷକମାନଙ୍କ ମତରେ ପ୍ରହରାଜ କଲିକତାରେ ପଢୁଥିବାବେଳେ ଅଭିରାମ ଭଞ୍ଜ, ପଲ୍ଲୀକବି ନନ୍ଦକିଶୋର ବଳ, ନାଟ୍ୟକାର କାମପାଳ ମିଶ୍ର ତାଙ୍କର ଘନିଷ୍ଠ ବନ୍ଧୁ ଥିଲେ । ସେମାନେ ସାନ୍ଧ୍ୟ ସମିତି ନାମରେ ଆଲୋଚନା-ଚକ୍ରଟିଏ ଗଢ଼ିଥିଲେ । ସେଥିରେ ପ୍ରତିଦିନ ନୂଆ ନୂଆ ବିଷୟରେ ଆଲୋଚନା ହେଉଥିଲା । ସେହି ଆଲୋଚନାମାନ ଉତ୍କଳ ସାହିତ୍ୟ ପତ୍ରିକାରେ 'ଭାଗବତଟୁଙ୍ଗିରେ ସନ୍ଧ୍ୟା'ର ରୂପ ନେଇଥିଲା ।

(ଖ) **'ବାଇ ମାହାନ୍ତି ପାଞ୍ଜି'** ପୁସ୍ତକ ଆକାରରେ ୧୯୧୩ ମସିହାରେ ସୋନପୁର ରାଜାଙ୍କର ଆର୍ଥିକ ସହାୟତାରେ ପ୍ରକାଶିତ ହୋଇଥିଲା । ଏଥିରେ ଦଶଗୋଟି ଆଲୋଚନା ଦୁର୍ମୁଖ ଶର୍ମା ଛଦ୍ମନାମରେ ସ୍ଥାନ ପାଇଛି । ତାହା ପୂର୍ବରୁ ୧୯୦୨ ଡିସେମ୍ବର ମାସରୁ ୧୯୦୪ ମସିହା ମଧ୍ୟରେ ସେଗୁଡ଼ିକ ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଉଭୟ ଭାଗବତ ଟୁଙ୍ଗିରେ ସନ୍ଧ୍ୟା ଏବଂ ବାଇ ମାହାନ୍ତି ପାଞ୍ଜି ସଂସ୍କାରମୂଳକ ଆଲୋଚନା । ଏଥିରେ ଗ୍ରାମ ଓ ସହରବାସୀଙ୍କ ଚାଲିଚଳଣି, ଜାତିପ୍ରଥା, ନାରୀଶିକ୍ଷା, ବିଧବା-ବିବାହ, ଆଧୁନିକ ସାହିତ୍ୟ, ଦୁର୍ନୀତି ପ୍ରଭୃତି ବିଭିନ୍ନ ସମସ୍ୟା ତଗ, ପ୍ରବଚନ ପ୍ରଭୃତି ସହ ହାସ୍ୟରସରେ ଆଲୋଚିତ ହୋଇଛି ।

(ଗ) ଦୁନିଆର ହାଲଚାଲ – ୧୯୦୬ ମସିହାରୁ ୧୯୧୫ ମସିହା ମଧ୍ୟରେ ୪୩ଟି ଭାଗରେ ଉତ୍କଳ ସାହିତ୍ୟରେ ଏହା ପ୍ରକାଶିତ ହୋଇଥିଲା । ପରେ ଏସବୁ ପୁସ୍ତକ ଆକାରରେ ଉତ୍କଳ ସାହିତ୍ୟ ବିକାଶ, କଟକ ପ୍ରକାଶନ ସଂସ୍ଥା ଦ୍ୱାରା ପ୍ରକାଶିତ ହୋଇଥିଲା । ଏଥିରେ ଲୋକଚରିତ୍ରର ବ୍ୟାପକ ଅନୁଧ୍ୟାନ ତାଙ୍କର ଉଦ୍ଦେଶ୍ୟ ଥିଲା । ଏଥିରେ ରାଜ-ପ୍ରାସାଦରୁ ପର୍ଣ୍ଣକୁଟୀର, ଉଚ୍ଚତମ ନ୍ୟାୟାଳୟରୁ ପଞ୍ଚାୟତ ସଭା ଓ ଗ୍ରାମ ଚୌକିଦାର, ରାଷ୍ଟ୍ରର ସର୍ବୋଚ୍ଚ କର୍ତ୍ତାଙ୍କଠାରୁ ସାଧାରଣ ଲୋକ, ରାଜନୀତି, ଅର୍ଥନୀତି ପ୍ରଭୃତି ବହୁ ବିଷୟ ଆଲୋଚିତ ହୋଇଥିଲା । ଏଥିରେ ସେ ଉଭୟ ପ୍ରାଚୀନ ଓ ଆଧୁନିକ ପକ୍ଷର ଆଲୋଚନା କରି ଉଭୟରେ ସଂସ୍କାର ଚାହିଁଥିଲେ ।

(ଘ) ଆମ ଘରର ହାଲଚାଲ – ୧୯୧୫ ମସିହାରୁ ୧୯୨୧ ମସିହା ପର୍ଯ୍ୟନ୍ତ ୨୩ଟି ଭାଗରେ ଉତ୍କଳ ସାହିତ୍ୟରେ ପ୍ରକାଶିତ ହୋଇଥିଲା । ପରେ ତାଙ୍କ ମୃତ୍ୟୁର ବହୁ ବର୍ଷ ପରେ ୧୯୭୧ ମସିହାରେ ଉତ୍କଳ ସାହିତ୍ୟ ପ୍ରକାଶନୀ, କଟକ ଦ୍ୱାରା ପୁସ୍ତକ ଆକାରରେ ପ୍ରକାଶିତ ହୋଇଥିଲା । ଏଗୁଡ଼ିକରେ ମଧ୍ୟ ସେ ସମାଜର ଦୋଷ-ଦୁର୍ବଳତା ଦେଖାଇ ସଂସ୍କାର କାମନା କରିଥିଲେ ।

(ଙ) ବାଈ ନାନୀଙ୍କ ବୁଢ଼ୁଳି – ଉତ୍କଳ ସାହିତ୍ୟ ପତ୍ରିକାରେ ୧୯୨୨ ଏବଂ ୧୯୨୫ ମସିହା ମଧ୍ୟରେ ପ୍ରକାଶିତ ହୋଇଥିଲା । ପରେ ଉତ୍କଳ ସାହିତ୍ୟ ବିକାଶ ସଂସ୍ଥାଦ୍ୱାରା ପୁସ୍ତକ ଆକାରରେ ପ୍ରକାଶିତ ହୋଇଥିଲା । ଏଥିରେ ନନାଙ୍କ ପାଞ୍ଜି, ଓଡ଼ିଆ ମୂଳକ ପ୍ରଭୃତି ଲେଖା ମଧ୍ୟ ସଂଯୋଜିତ ଥିଲା ।

(ଚ) ମିଆଁ ସାହେବଙ୍କ ରୋଜନାମଚା – ୧୯୦୪ ମସିହାରୁ ୧୯୦୫ ମସିହା ମଧ୍ୟରେ ଛଅଗୋଟି ଭାଗରେ ପ୍ରକାଶିତ ହୋଇଥିଲା । ପରେ ସେଗୁଡ଼ିକ ଉତ୍କଳ ସାହିତ୍ୟ ବିକାଶ ସଂସ୍ଥାଦ୍ୱାରା 'ପ୍ରହରାଜ ବିଚିତ୍ରା' ପୁସ୍ତକରେ ପ୍ରକାଶିତ ହୋଇଥିଲା । ଏଥିରେ ମୁସଲମାନ ସମାଜର ଚଳଣି, ବିବାହ ଓ ତଲାଗ ବିଧି ପ୍ରଭୃତି ସମାଲୋଚିତ ହୋଇଥିଲା ।

ତାଙ୍କର ଅନ୍ୟ ପ୍ରସିଦ୍ଧ ରମ୍ୟରଚନା ସବୁ ବିଭିନ୍ନ ସାହିତ୍ୟ ପତ୍ରିକାରେ ବିଭିନ୍ନ ସମୟରେ ପ୍ରକାଶିତ ହୋଇଥିଲା । ଢେଙ୍କେବାପାଙ୍କ ଟୁଣି ମୁଣି 'ରସଚକ୍ର' ପତ୍ରିକାରେ ୧୯୩୩ ଏବଂ ୧୯୩୪ ମସିହାରେ ପ୍ରକାଶିତ ହୋଇଥିଲା । 'ସ୍ୱପ୍ନରେ ରାଜଯୋଗ' ନୀଳକଣ୍ଠ ଦାସଙ୍କର 'ନବଭାରତ' ପତ୍ରିକାରେ ୧୯୩୪ ମସିହାରେ ପାଞ୍ଚଗୋଟି ଭାଗରେ ଧୂର୍ମୂର୍ଷଧର୍ମା ଛଦ୍ମନାମରେ ପ୍ରକାଶିତ ହୋଇଥିଲା । ଗୋପାଳ ପ୍ରହରାଜ ଛଦ୍ମନାମ 'ଧୂର୍ମୁଷ ଶର୍ମା' ବୋଲି ଲେଖିଥିଲେ; ନୀଳକଣ୍ଠ ଦାସ ତାହାକୁ ଧୂର୍ମୁଷ ଧର୍ମା' ନାମକୁ ବଦଳାଇ ଦେଇଥିଲେ । ପରେ ୧୯୩୬ ମସିହାରେ 'ସ୍ୱପ୍ନରେ ରାଜଯୋଗ' ଦୁଇଟି ଭାଗରେ ସେହି ଛଦ୍ମନାମରେ ନବଭାରତ ପ୍ରେସରେ ଛପାହୋଇଥିଲା । ସେ ପ୍ରବନ୍ଧଗୁଡ଼ିକରେ ଢେଙ୍କାନାଳ ରାଜ୍ୟରେ ତାଙ୍କର ଅନୁଭୂତି ବର୍ଣ୍ଣନା କରାଯାଇଥିଲା ଏବଂ ତାଙ୍କର ଲେଖା ଗଡ଼ଜାତ ଆନ୍ଦୋଳନକୁ ଇନ୍ଧନ ଯୋଗାଇଥିଲା । ତାଙ୍କର ବିଭିନ୍ନ ପତ୍ରିକାରେ ପ୍ରକାଶିତ ଅନ୍ୟାନ୍ୟ ରମ୍ୟରଚନା ମଧ୍ୟରେ ଦୁନିଆର ଗୀତି, 'କନ୍ୟାଦେଖା ବାଇଗଣ ବିକା', 'ମାଦଳାପାଞ୍ଜିରୁ ବିଡ଼ାଏ',

ଧାରଣ ବନ୍ଧ୍ୟର ପୁଞ୍ଜିପାଣି, 'ନନାଙ୍କ ପାଞ୍ଜି, ଓଡ଼ିଆ ମୂଲକ' ଓ 'ଭାଷାକୋଷ ପାଇଁ ସଫର' ପ୍ରଭୃତି ଜଣାଶୁଣା ।

ତାଙ୍କର ସମସ୍ତ ରମ୍ୟରଚନା ଉପହାସମୂଳକ, ସଂସ୍କାରକାମୀ ସମାଲୋଚନା । ଏଗୁଡ଼ିକରେ ସେ ସମସାମୟିକ ସମାଜର ଇତିହାସ ଲେଖିଛନ୍ତି । ତାଙ୍କର ଅନେକ ରମ୍ୟ-ରଚନାକୁ ସାହିତ୍ୟିକମାନେ ସଂଯମହୀନ, ଶାଳୀନତାବିବର୍ଜିତ, ରୁଚିଗର୍ହିତ ବୋଲି ସମାଲୋଚନା କରିଛନ୍ତି; ମାତ୍ର ସମାଜକୁ ଦୁର୍ନୀତି ଏବଂ କଦାଚାରରୁ ମୁକ୍ତ କରିବାକୁ ସେଗୁଡ଼ିକ ଉପରେ ସେ ବ୍ୟଙ୍ଗ ଭାଷାରେ କଠୋର ଆଘାତ କରିଛନ୍ତି । ସେ ନିଜେ ମଧ୍ୟ ତାଙ୍କ ଲେଖାକୁ 'ପାଗ ବାନ୍ଧୁ ବାନ୍ଧୁ କଚେରି ବରଖାସ୍ତ' ବୋଲି ସମାଲୋଚନା କରିଛନ୍ତି । ତାର ଅର୍ଥ, ସେଥିରେ ମୂଳ ବିଷୟବସ୍ତୁ ଅପେକ୍ଷା ଉପକ୍ରମଣିକା ଅଧିକ ଆଲୋଚିତ ହୋଇଛି । ମାତ୍ର ସମସ୍ତ ପାଠକ ଏହା ସ୍ୱୀକାର କରିଛନ୍ତି ଯେ, ସେ ସୂକ୍ଷ୍ମ ବଚନ ପ୍ରୟୋଗରେ ପାରଙ୍ଗମ ଥିଲେ ଏବଂ ଓଡ଼ିଆ ଭାଷାର ଶ୍ରେଷ୍ଠ ବ୍ୟଙ୍ଗକାରଙ୍କ ମଧ୍ୟରେ ଜଣେ ଥିଲେ ।

**୩. ପଦ୍ୟରଚନା –**

ପ୍ରହରାଜଙ୍କର ପଦ୍ୟରଚନା ସୀମିତ । ତାଙ୍କର ବାଇଦାସଙ୍କ ଭଜନ ଓ ଶିଶୁଗୀତ ୧୯୨୬ ମସିହାରେ ପ୍ରଥମେ ପ୍ରକାଶିତ ହୋଇଥିଲା । ଏଥିରେ ୩୧ ଗୋଟି ଭଜନ ଓ ଶିଶୁଗୀତ ଥିଲା । ସେଥିରୁ ୧୧ ଗୋଟି ଭଜନ ପ୍ରହରାଜ ଏବଂ ଅନ୍ୟ ୨୦ ଗୋଟି ଭଜନ ଓ ଶିଶୁଗୀତ ପୀତାମ୍ବରୀ ଦେବୀ ରଚନା କରିଥିଲେ ବୋଲି ଗବେଷକମାନେ କହନ୍ତି । ପୂର୍ବରୁ ଏହି ଭଜନମାନଙ୍କ ମଧ୍ୟରୁ ଅନେକ ଉତ୍ତମ ସାହିତ୍ୟ ପତ୍ରିକାରେ ୧୯୦୫ ମସିହାରେ ପ୍ରକାଶିତ ହୋଇଥିଲା । ଶିଶୁଗୀତ ମଧ୍ୟରେ 'ଧୋ ରେ ବାୟା ଧୋ', 'ହାତୀ ଓ ପାରା' ପ୍ରଭୃତି ଅତ୍ୟନ୍ତ ଲୋକପ୍ରିୟ ।

**୪. ରଚନାତ୍ମକ ଗୁରୁ ଆଲୋଚନା –**

ଲୋକସାହିତ୍ୟ ସଂକଳନ ଏବଂ ରମ୍ୟରଚନା ବ୍ୟତୀତ ପ୍ରହରାଜ ୧୯୦୬ ମସିହାରୁ ୧୯୪୪ ମସିହା ପର୍ଯ୍ୟନ୍ତ ଅନେକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ପ୍ରବନ୍ଧମାନ 'ଉତ୍କଳ ସାହିତ୍ୟ', 'ରସଚକ୍ର' ଓ 'ନବଭାରତ' ପତ୍ରିକାମାନଙ୍କରେ, ବିଶେଷତଃ ୧୯୩୧ ଓ ୧୯୪୪ ମସିହା ମଧ୍ୟରେ ପ୍ରକାଶ କରିଥିଲେ । ସେହି ପ୍ରବନ୍ଧମାନଙ୍କ ମଧ୍ୟରେ ଉତ୍କଳ ସାହିତ୍ୟ ପତ୍ରିକାରେ ୧୯୦୪ ଏବଂ ୧୯୦୫ ମସିହାରେ ପ୍ରକାଶିତ 'ବିଶୁଦ୍ଧ ଭାଷା', 'ଉତ୍କଳ ସାହିତ୍ୟର ଆଧୁନିକ ଗତି' (୧୯୨୪ରେ ପ୍ରକାଶିତ), ଋଷିପ୍ରାଣ ରାମଶଙ୍କର (୧୯୩୪ରେ ପ୍ରକାଶିତ), 'ମଧୁତର୍ପଣ' (୧୯୩୫ରେ ପ୍ରକାଶିତ), ପଲ୍ଲୀକବି ନନ୍ଦକିଶୋର ସ୍ମୃତିପୂଜା ଏବଂ ସ୍ୱର୍ଗତ ବିଶ୍ୱନାଥ କର (୧୯୪୬ରେ ପ୍ରକାଶିତ), ଗୁରୁ ନାନକ ଏବଂ କବି ଗଙ୍ଗାଧର ପ୍ରଧାନ ଓ ପ୍ରସିଦ୍ଧ । ଏହା ବ୍ୟତୀତ ୧୯୩୫ ଓ ୧୯୩୯ ମସିହା ମଧ୍ୟରେ ଅନେକ ଓଡ଼ିଆ ପୁସ୍ତକର ସେ ସମୀକ୍ଷା କରିଥିଲେ ଏବଂ ୧୯୩୭ରେ ଶଶିଭୂଷଣ ରାୟଙ୍କ 'ପ୍ରବନ୍ଧ ପ୍ରବାହ' ବହିର ମୁଖବନ୍ଧ ଲେଖିଥିଲେ । ସ୍ଥୂଳତଃ ପ୍ରହରାଜ ୧୯୦୧ ମସିହାରୁ ୧୯୪୦ ମସିହା ପର୍ଯ୍ୟନ୍ତ

ଉତ୍କଳ ସାହିତ୍ୟ ପତ୍ରିକାରେ ନିୟମିତ ଭାବରେ ବିଭିନ୍ନ ରମ୍ୟରଚନା, ବିଭିନ୍ନ କବି ଓ ଲେଖକଙ୍କର ସ୍ମୃତି ତର୍ପଣ, ଓଡ଼ିଆ ଭାଷା ଓ ସାହିତ୍ୟର ସମାଲୋଚନା ଏବଂ ବହୁ ପୁସ୍ତକର ସମୀକ୍ଷା କରି ପ୍ରବନ୍ଧମାନ ଲେଖିଥିଲେ ।

ତାହା ବ୍ୟତୀତ ୧୯୩୦ ମସିହାରୁ ବିଶ୍ୱନାଥ କରଙ୍କ ସହିତ 'ସତ୍ୟ ସମାଚାର' ନାମରେ ଖଣ୍ଡିଏ ସାପ୍ତାହିକ ପତ୍ରିକା ସଂପାଦନା କରୁଥିଲେ । ସତ୍ୟ ସମାଚାର ୧୯୩୦ ମସିହାରେ ପ୍ରଥମେ ବିଶ୍ୱନାଥ କର ଏବଂ ଗୋପାଳ ପ୍ରହରାଜଙ୍କ ସମ୍ପାଦନାରେ ପ୍ରକାଶିତ ହୋଇଥିଲା । ୧୯୩୫ ମସିହାରେ ବିଶ୍ୱନାଥ କରଙ୍କ ମୃତ୍ୟୁ ପରେ ଏ ପତ୍ରିକା କିଛି କାଳ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କର ଯୁଗ୍ମ ସଂପାଦକତ୍ୱରେ ଏବଂ ୧୯୩୬ ମସିହାରୁ କେବଳ ଗୋପାଳ ପ୍ରହରାଜଙ୍କ ସଂପାଦନାରେ ପ୍ରକାଶିତ ହେଉଥିଲା । ସତ୍ୟ ସମାଚାର କଂଗ୍ରେସ ଆନ୍ଦୋଳନକୁ ବିରୋଧ କରୁଥିଲା ଏବଂ ବ୍ରିଟିଶ ସରକାରଙ୍କ କାର୍ଯ୍ୟର ପ୍ରଶଂସା କରୁଥିଲେ । ସେଥିଯୋଗୁଁ ଏହା ଜନପ୍ରିୟ ହୋଇ ନଥିଲା ।

ପ୍ରହରାଜ ତାଙ୍କ ସାହିତ୍ୟରେ ନିଜ ଜୀବନ ଓ ପରିବେଶ, ଓଡ଼ିଶାର ବିଭିନ୍ନ ସାମାଜିକ ସମସ୍ୟା ବିଷୟରେ ତାଙ୍କର ଅନୁଭୂତି ପ୍ରକାଶ କରୁଥିଲେ । ତାଙ୍କର ବିଚାରାଧାରା ଏବଂ ଲେଖାର ଶୈଳୀ ଏକ ସ୍ୱତନ୍ତ୍ର ଧରଣର ଥିଲା । ସେ ନିର୍ଭୀକ ଭାବରେ ସମାଜର ସବୁ ଶ୍ରେଣୀର ଲୋକଙ୍କର ଏବଂ ସମାଜର ଦୁର୍ନୀତି, ଦୋଷ-ଦୁର୍ବଳତାର କଟୁ ସମାଲୋଚନା କରୁଥିଲେ । ତାଙ୍କ ସମୟରେ ଓଡ଼ିଆ ସାହିତ୍ୟରେ ବଙ୍ଗଳା ସାହିତ୍ୟ, ଇଂରାଜୀ ଏବଂ ୟୁରୋପୀୟ ସାହିତ୍ୟ ଓ ଜୀବନଯାପନ ପଦ୍ଧତିର ପ୍ରଭାବ ବଢୁଥିଲା । ୧୯୨୯ ମସିହାରେ ସେ ଉତ୍କଳ ସାହିତ୍ୟ ସମାଜର ସଭାପତି ହୋଇଥିଲେ । ତାଙ୍କର ଅଭିଭାଷଣରେ ସେ କହିଥିଲେ ଯେ, ଓଡ଼ିଆମାନେ ଉତ୍କଳର ପ୍ରାଚୀନ ଗ୍ରନ୍ଥମାନ ସଂଗ୍ରହ କରିପାରୁନାହାନ୍ତି, ଅଥଚ ବିଦେଶୀ ଗବେଷକମାନେ ସେଗୁଡ଼ିକ ସଂଗ୍ରହ କରୁଛନ୍ତି । ଉତ୍କଳୀୟ ସାଧକମାନଙ୍କର ଯୋଗ ଓ ଦର୍ଶନ ଆମ୍ଭେମାନେ ଗବେଷଣା ଓ ଆଲୋଚନା କରୁନାହୁଁ । ଓଡ଼ିଆଭାଷାରେ ବଙ୍ଗ ସାହିତ୍ୟର ପ୍ରଭାବ ଓଡ଼ିଆ ଭାଷା ଏବଂ ସାହିତ୍ୟର ଅଧୋଗତି କରୁଛି । ରବୀନ୍ଦ୍ର ଭାଷାର ପରିପାଟୀ ଓ ସୌନ୍ଦର୍ଯ୍ୟକୁ ଅନୁଶୀଳନ ଓ ସାଧନ ନ କରି, ବୁଝିନପାରି, କେବଳ ଶବ୍ଦଯୋଜନାକୁ ଉଠାଇପକାଇ, ତାକୁ ଅନୁକରଣ କରି ଓଡ଼ିଆ ସାହିତ୍ୟରେ ନୂତନତ୍ୱ ଆଣିବାର ପ୍ରୟାସ ଆଧୁନିକ ଲେଖକମାନେ କରୁଥିବାର ବୋଧହେଉଅଛି । ସମ୍ଭବତଃ ଆମ ପୁଅ ନାତି ଅମଳକୁ ଓଡ଼ିଶାତମାମ୍ ରବୀନ୍ଦ୍ରନାଥଙ୍କ ପରି କବି ସାଲୁବାଲୁହେବେ ।

ପ୍ରହରାଜ ମଧ ଓଡ଼ିଆ ସାହିତ୍ୟର ପ୍ରାଚୀନତା ଏବଂ ଆଧୁନିକତା ମଧ୍ୟରେ ସମନ୍ୱୟ ରକ୍ଷାକରିବାକୁ ଚେଷ୍ଟାକରୁଥିଲେ, ଉଭୟରୁ ଉତ୍କୃଷ୍ଟ ବିଷୟ ଗ୍ରହଣ କରିବାକୁ ମତ ଦେଉଥିଲେ । ସେ ଆମ ସମାଜର ସବୁ ପ୍ରକାରର ଅନ୍ଧବିଶ୍ୱାସ ଓ ଧର୍ମୀୟ ସଂକୀର୍ଣ୍ଣତାର ବିରୋଧ କରୁଥିଲେ । ସେଥି ସଙ୍ଗେ ସଙ୍ଗେ ଆଧୁନିକ ଇଂରାଜୀ-ପଢୁଆ ଶିକ୍ଷିତ ବ୍ୟକ୍ତିଙ୍କର କପଟତା, ସ୍ୱାର୍ଥପରତା, ତୋଷାମଦୀ, ମିଥ୍ୟାକଥନ ଏବଂ ଛିଦ୍ରାନ୍ୱେଷଣ ପ୍ରଭୃତିର ଘୋର ନିନ୍ଦା

କରୁଥିଲେ । ସ୍ୱାଧୀନ ଚିନ୍ତା ଓ ନିର୍ଭୀକତା ତାଙ୍କର ମହତ୍ ଗୁଣ ଥିଲା । ସେ ଓଡ଼ିଶାର ପ୍ରଚଳିତ କାହାଣୀ, ଢଗଢମାଳି, ପ୍ରବାଦ ଓ ଆପ୍ତବାକ୍ୟ ସବୁ ଲୋକଲୋଚନକୁ ଆଣିବାକୁ ଯତ୍ନ କରୁଥିଲେ । ତାଙ୍କ ସମୟରେ ପ୍ରକାଶିତ ବହୁ ପୁସ୍ତକର ସେ ସମୀକ୍ଷା କରିଥିଲେ । ସେଥିରେ ଫକୀରମୋହନଙ୍କ ଛ'ମାଣ ଆଠଗୁଣ୍ଠ, ଯୁଗଧର୍ମ, ମଧୁବାବୁଙ୍କ ଓଡ଼ିଆ ଗୀତ ଓ ବକ୍ତୃତା, ବିପିନବିହାରୀ ରାୟଙ୍କର 'ପ୍ରବନ୍ଧ ସୋପନ', ଶଶିଭୂଷଣ ରାୟଙ୍କ 'ପ୍ରବନ୍ଧ ପ୍ରବାହ' ପ୍ରଭୃତି ଅନ୍ତର୍ଭୁକ୍ତ ଥିଲା । ହିନ୍ଦୁ ପୁରାଣ ଓ କାବ୍ୟବର୍ଣ୍ଣିତ ବିଷୟ ବସ୍ତୁକୁ ସେ ଆଧୁନିକ ଦୃଷ୍ଟିକୋଣରୁ ବିଚାର କରୁଥିଲେ । ତାଙ୍କ ଚିନ୍ତାଧାରାରେ, ରଚନା-ଶୈଳୀରେ ଏବଂ ଭାଷାରେ ସଂପୂର୍ଣ୍ଣ ମୌଳିକତା ଥିଲା । ସେ ଫକୀରମୋହନଙ୍କର ପ୍ରକୃତ ଦାୟାଦ ଥିଲେ । ସେ ନାରୀ ସ୍ୱାଧୀନତା, ନାରୀଶିକ୍ଷା, ବିଧବା-ବିବାହ ପ୍ରଭୃତିର ସପକ୍ଷରେ ଥିଲେ ଏବଂ ହିନ୍ଦୁ ଓ ମୁସଲମାନ ଉଭୟ ଧର୍ମର କୁପ୍ରଥାକୁ ବିରୋଧ କରୁଥିଲେ । ହାକିମ, ଓକିଲ, ମୋହରିର, ସରକାରୀ କର୍ମଚାରୀ, ରାଜା, ମହାରାଜା, ଜମିଦାର, ମହାଜନ ପ୍ରଭୃତି ସମାଜର ବିଭିନ୍ନ ଶ୍ରେଣୀର ବ୍ୟକ୍ତିଙ୍କର ନିନ୍ଦା କିମ୍ବା ବିଭିନ୍ନ ପ୍ରକାର ବ୍ୟକ୍ତିଙ୍କର ନିନ୍ଦା କିମ୍ବା ପ୍ରଶଂସାମୂଳକ ସମାଲୋଚନା କରୁଥିଲେ ।

**୫. ଭାଷାକୋଷ ସଂକଳନ –**

'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ପ୍ରଣୟନ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଜୀବନର ସର୍ବଶ୍ରେଷ୍ଠ କାର୍ଯ୍ୟ ଏବଂ ସେ ଅଭିଜ୍ଞାନ ଗ୍ରନ୍ଥ ତାଙ୍କର ଓଡ଼ିଆ ଭାଷା ଓ ଜାତିକୁ ସୁମହତ୍ ଅବଦାନ । ବହୁ ବିଜ୍ଞ ବ୍ୟକ୍ତି ଏହି ଭାଷାକୋଷକୁ ଯଥାର୍ଥଭାବରେ ଓଡ଼ିଆ ଭାଷା ଓ ଜାତିର ଆଧୁନିକ କୋଣାର୍କ ଭାବରେ ଚିତ୍ରଣ କରିଛନ୍ତି । ପିଲାକାଳରୁ ଏବଂ ସ୍କୁଲ-କଲେଜରେ ପଢ଼ିବା ସମୟରୁ ପ୍ରହରାଜଙ୍କର ଧାରଣା ହୋଇଥିଲା ଯେ, ଓଡ଼ିଆ ପୁସ୍ତକ ଓ ପତ୍ରପତ୍ରିକାରେ ବ୍ୟବହୃତ ଭାଷା ଓଡ଼ିଶାର ବିଭିନ୍ନ ଅଞ୍ଚଳର ପୁରପଲ୍ଲୀରେ ଲୋକମାନେ କହୁଥିବା ଭାଷାଠାରୁ ଭିନ୍ନ । ସାହିତ୍ୟର ଭାଷା ଲୋକମୁଖର ଭାଷା ନୁହେଁ; କିନ୍ତୁ ଲୋକମାନେ ଯେଉଁ ଭାଷା କହୁଛନ୍ତି, ସେହି ଭାଷାରେ ସାହିତ୍ୟ ଲେଖାହେବା ଉଚିତ । ତାଙ୍କର ସାହିତ୍ୟିକ ଜୀବନ ଆରମ୍ଭ ସମୟରେ ଓଡ଼ିଶାରେ ବିଭିନ୍ନ ଶ୍ରେଣୀର ଲେଖକ ବିଭିନ୍ନ ପ୍ରକାର ଭାଷା ବ୍ୟବହାର କରୁଥିଲେ । ବହୁ ଶିକ୍ଷିତ ବ୍ୟକ୍ତି ଓଡ଼ିଆ ଲେଖାରେ ଇଂରାଜୀ ଶବ୍ଦ ଓ ଭାବ ମିଶାଇଦେବାକୁ ଆଗ୍ରହୀ ଥିଲେ । ଗାଁମାନଙ୍କର ଯାତ୍ରା, ପାଲା ପ୍ରଭୃତିର ଭାଷା ହିନ୍ଦୀ, ଓଡ଼ିଆ ଓ ବଙ୍ଗଳା ମିଶାମିଶି ଭାଷା ଥିଲା । ସଂକୀର୍ତ୍ତନ ସବୁ ବଙ୍ଗଳା ଭାଷାରେ ବୋଲାହେଉଥିଲା ଏବଂ ସଂକୀର୍ତ୍ତନ ଓ ପାଲା ଉପରେ ବଙ୍ଗଳା ଭାଷାର ଖୁବ୍ ପ୍ରଭାବ ଥିଲା ।

ଶିକ୍ଷିତ ପଣ୍ଡିତମାନେ ଲୋକମାନେ କହୁଥିବା ଓଡ଼ିଆ ଭାଷାକୁ ନିକୃଷ୍ଟ, ଇତର, ଅମାର୍ଜିତ ଗ୍ରାମୀୟ ଭାଷା ବୋଲି ବିଚାରକରି ସାହିତ୍ୟରେ ତାକୁ ବ୍ୟବହାର କରିବାକୁ ଘୃଣା କରୁଥିଲେ । ଲିଖିତ ଗଦ୍ୟ ଓ ପଦ୍ୟ ସାହିତ୍ୟରେ ସଂସ୍କୃତ ଶବ୍ଦ ବହୁଳ ଭାବରେ ବ୍ୟବହୃତ ହେଉଥିଲା । ପ୍ରହରାଜଙ୍କ ମତରେ ଏସବୁ ପ୍ରକୃତ ଓଡ଼ିଆ ଭାଷା ନ ଥିଲା । ସାଧାରଣ ଲୋକମାନେ ଯେଉଁ ଭାଷାରେ ନିଜ ଘରେ ଏବଂ ବାହାର ଲୋକମାନଙ୍କ ସହିତ କଥାବାର୍ତ୍ତା କରନ୍ତି, ତାହାହିଁ ତାଙ୍କର ଭାଷା । ଗୋଟିଏ ବଢ଼ନ୍ତା ଗଛ ପରି କାଳକ୍ରମେ ଏହା ଲୋକମୁଖରେ

ବଢ଼ି ବଢ଼ି ଗଲିଛି ଏବଂ ନୂଆ ନୂଆ ଶବ୍ଦ ମିଶିଯାଉଛି । ଲୋକମୁଖର ସେହି ଭାଷା ସାହିତ୍ୟରେ ବ୍ୟବହୃତ ହେବା ଉଚିତ । ତେଣୁ ତାଙ୍କ ସାହିତ୍ୟଲେଖା ଆରମ୍ଭରୁ ସେ ସେହି ଭାଷାରେ ଲେଖିବାକୁ ଆରମ୍ଭ କରିଥିଲେ । ତାଙ୍କର ଭାଗବତ ଟୁଙ୍ଗିରେ ସନ୍ଧ୍ୟା, ବାଇ ମାହାନ୍ତି ପାଞ୍ଜି ଏବଂ ସମସ୍ତ ରମ୍ୟରଚନା ସେହି ଭାଷାରେ ଲିଖିତ ।

ଫକୀରମୋହନ ସଂସ୍କୃତ ପଣ୍ଡିତମାନଙ୍କର ସଂସ୍କୃତ ଶବ୍ଦବହୁଳ ଭାଷାରେ ନ ଲେଖି ଲୋକେ କହୁଥିବା ଭାଷାରେ ଲେଖା ଆରମ୍ଭ କରିଥିଲେ । ପ୍ରହରାଜ ସାହିତ୍ୟରେ କଥିତ ଭାଷାର ପ୍ରଚଳନ ଅଧିକରୁ ଅଧିକ କଲେ । ସେ ସଂସ୍କୃତ ଭାଷାର ବିରୋଧୀ ନ ଥିଲେ । ସେ କହୁଥିଲେ ଯେ, ଓଡ଼ିଆ ଭାଷାର ଶତକଡ଼ା ପ୍ରାୟ ୭୫ ଭାଗ ଶବ୍ଦ ସଂସ୍କୃତ ଭାଷାରୁ ତତ୍‌ସମ ଓ ତଦ୍‌ଭବ ରୂପେ ଗୃହୀତ ହୋଇଛି । ସଂସ୍କୃତରେ ଯେଉଁମାନଙ୍କର ଜ୍ଞାନ ନାହିଁ, ସେମାନେ ଓଡ଼ିଆ ଭାଷା ଓ ସାହିତ୍ୟରେ ପାରଙ୍ଗମ ହେବା ସମ୍ଭବ ନୁହେଁ । ସେ ଚିରଦିନ ସରଳ, ଖାଣ୍ଟି ଓଡ଼ିଆ ଶବ୍ଦ ବ୍ୟବହାରର ପକ୍ଷପାତୀ । ଇଚ୍ଛାକରି ସଂସ୍କୃତ ଶବ୍ଦ ବ୍ୟବହାର କରି ରଚନାକୁ ବାଗାଡ଼ମ୍ବରମୟ କରିବାକୁ ସେ ଚାହୁଁ ନ ଥିଲେ । ମାତ୍ର କଥିତ ଭାଷା ସବୁ ଅଞ୍ଚଳରେ ଏବଂ ସବୁ ଜାତି ମଧ୍ୟରେ ସମାନ ନ ଥିଲା । ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଲୋକମାନେ ବିଭିନ୍ନ ପ୍ରକାର ଭାଷା ବ୍ୟବହାର କରନ୍ତି । ପ୍ରତି ଅଞ୍ଚଳରେ ମଧ୍ୟ ଉଚ୍ଚ ନୀଚ ଜାତିର ଲୋକ ବିଭିନ୍ନ ଶବ୍ଦ ବ୍ୟବହାର କରନ୍ତି ଏବଂ ଏକାର୍ଥବୋଧକ ଅନେକ ଶବ୍ଦକୁ ବିଭିନ୍ନ ଭାବରେ ଉଚ୍ଚାରଣ କରନ୍ତି । ସେ ଶବ୍ଦ ସବୁ କୌଣସି ଅଭିଧାନରେ ନ ଥିଲା କିମ୍ବା ବ୍ୟାକରଣସମ୍ମତ ନୁହେଁ । ପ୍ରହରାଜ ଯେଉଁ ଭାଷାରେ ଲେଖୁଥିଲେ, ତାହା କଟକ ଜିଲ୍ଲାର ଗାଁ ଓ ସହରମାନଙ୍କରେ ଲୋକେ କହୁଥିବା ଭାଷା । ଓଡ଼ିଶାର ସମ୍ବଲପୁର, ଗଞ୍ଜାମ ଏବଂ ଉତ୍ତର ବାଲେଶ୍ୱର ଅଞ୍ଚଳମାନଙ୍କରେ ଲୋକେ କହୁଥିବା ଭାଷା ତାହାଠାରୁ ଭିନ୍ନ ।

କଚେରିର ମୋହରିର ଏବଂ ଓକିଲମାନେ ଯେଉଁ ଓଡ଼ିଆ ଭାଷାରେ ଦରଖାସ୍ତ, ଦଲିଲ ଦସ୍ତାବିଜ ଲେଖୁଥିଲେ, ତାହା ସାଧାରଣ ଲୋକ କହୁଥିବା ଭାଷାଠାରୁ ଭିନ୍ନ । ଓଡ଼ିଆ ଭାଷାରେ ପୂର୍ଣ୍ଣାଙ୍ଗ ଅଭିଧାନ ନଥିବାରୁ ଅନେକ ସମୟରେ ଓଡ଼ିଶା ପ୍ରଦେଶର ଲୋକେ ଅନ୍ୟ ପ୍ରଦେଶରେ ବାସକରୁଥିବା ଓଡ଼ିଆମାନଙ୍କ ମଧରେ ପ୍ରଚଳିତ ଶବ୍ଦମାନ ବୁଝିପାରନ୍ତିନାହିଁ । ଓଡ଼ିଶାର ପ୍ରାଚୀନ ଗ୍ରନ୍ଥମାନଙ୍କରେ ବ୍ୟବହୃତ ଅନେକ ଶବ୍ଦ କାଳକ୍ରମେ ଲୋପପାଇଯାଇଛି । ସେଗୁଡ଼ିକର ପ୍ରକୃତ ଅର୍ଥ ଓଡ଼ିଆଭାଷାର ପଣ୍ଡିତମାନେ ସୁଦ୍ଧା ବୁଝିପାରନ୍ତି ନାହିଁ ।

ଓଡ଼ିଆ ଭାଷାରେ ସୁଗମ ଓ ପୂର୍ଣ୍ଣାଙ୍ଗ ଅଭିଧାନ ନ ଥିଲା । ସେ ଭାଷାକୋଷ ଲେଖିବା ପୂର୍ବରୁ ଆର୍ମସଟ୍ରନ୍‌ଙ୍କ ଓଡ଼ିଆ ଭାଷାର୍ଥ ଅଭିଧାନ, ଜଗନ୍ନାଥ ରାଓଙ୍କ ଉତ୍କଳ ଅଭିଧାନ, ମଧୁସୂଦନ ରାଓଙ୍କ ସୁଖବୋଧ ଅଭିଧାନ ଏବଂ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଶବ୍ଦତତ୍ତ୍ୱବୋଧ ଅଭିଧାନ ପରି କେତେକ ଅଭିଧାନ ସଂକଳିତ ହୋଇଥିଲା । ମାତ୍ର ସେଗୁଡ଼ିକରେ ଖାଣ୍ଟି ଓଡ଼ିଆ ଶବ୍ଦର ଅଭାବ ଥିଲା ବୋଲି ପ୍ରହରାଜ ଅନୁଭବ କରିଥିଲେ । ତେଣୁ ସେ ଓଡ଼ିଶାର ପୁରାତନ ଗ୍ରନ୍ଥମାନଙ୍କରେ ଯେଉଁ ଓଡ଼ିଆ ଶବ୍ଦମାନ ବ୍ୟବହୃତ ହୋଇଛି, ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଲୋକମାନେ ଯେଉଁ ଓଡ଼ିଆ ଶବ୍ଦ ବ୍ୟବହାର କରୁଛନ୍ତି, ଓଡ଼ିଶା ବାହାରେ

ବାସକରୁଥିବା ଓଡ଼ିଆମାନେ ଯେଉଁ ଶବ୍ଦସବୁ ବ୍ୟବହାର କରୁଛନ୍ତି; ଇଂରାଜୀ, ଜର୍ମାନ, ଫରାସୀ, ପର୍ତ୍ତୁଗୀଜ, ପାର୍ଶୀ, ଉର୍ଦ୍ଦୁ ପ୍ରଭୃତି ବିଦେଶୀ ଭାଷାରୁ ଯେଉଁସବୁ ଶବ୍ଦ ଓଡ଼ିଆ ଭାଷାରେ ମିଶିଛି; ହିନ୍ଦୀ, ବଙ୍ଗଳା, ତେଲଗୁ, ମରାଠୀ, ଗୁଜରାଟୀ ପ୍ରଭୃତି ଅନ୍ୟ ଭାରତୀୟ ଭାଷାମାନଙ୍କରୁ ଯେଉଁସବୁ ଶବ୍ଦ ଓଡ଼ିଆଭାଷାରେ ମିଶିଛି; ଓଡ଼ିଶାର ଗଉଡ଼, କମାର, କେଉଟ, ବ୍ରାହ୍ମଣ, ଧୋବା, ବାଉରି ପ୍ରଭୃତି ବିଭିନ୍ନ ଜାତି ଓ ପାଟକମାନେ ଯେଉଁ ବିଭିନ୍ନ ପ୍ରକାର ଓଡ଼ିଆ ଶବ୍ଦ ବ୍ୟବହାର କରୁଛନ୍ତି; ତାହା ବ୍ୟତୀତ ସାନ୍ତାଳ କନ୍ଧ, କୋହ୍ଲ ପ୍ରଭୃତି ଆଦିବାସୀ ଭାଷା; ଲରିଆ, ସମ୍ବଲପୁରୀ, ଛତିଶଗଡ଼ୀ ପ୍ରଭୃତି ଓଡ଼ିଆ ଭାଷାର ଉପଭାଷା ପ୍ରଭୃତି ସମସ୍ତ ଓଡ଼ିଆ ଶବ୍ଦ ସଂକଳନ କରି ଗୋଟିଏ ପୂର୍ଣ୍ଣାଙ୍ଗ ଅଭିଧାନ ପ୍ରଣୟନ କରିବାକୁ ଇଚ୍ଛାକଲେ ।

ଗବେଷକମାନେ କହନ୍ତି ଯେ, ଓଡ଼ିଆଭାଷାରେ ଏପରି ଗୋଟିଏ ପୂର୍ଣ୍ଣାଙ୍ଗ ଅଭିଧାନ ପ୍ରଣୟନ କରିବାକୁ ୧୯୧୩ ମସିହାରେ ତତ୍କାଳୀନ ରେଭେନ୍ସା କଲେଜିଏଟ୍ ସ୍କୁଲର ପ୍ରଧାନ ଶିକ୍ଷକ ହଣ୍ଡରସନ୍ ସାହେବ ପ୍ରଥମେ ପ୍ରହରାଜଙ୍କୁ ପ୍ରେରଣା ଦେଇଥିଲେ । ୧୯୧୩ ମସିହାରୁ ଏହିପରି କଳ୍ପନା କ୍ରମେ କ୍ରମେ ପ୍ରହରାଜଙ୍କ ମନରେ ଦୃଢ଼ୀଭୂତ ହୋଇଥିଲା ଏବଂ ସେ ବିଭିନ୍ନ ସୂତ୍ରରୁ ଶବ୍ଦ ସଂଗ୍ରହ କରିବାକୁ ଆରମ୍ଭ କରିଥିଲେ । ସଂସ୍କୃତ ତତ୍ସମ ଓ ତଦ୍ଭବ ଶବ୍ଦ, ସେଗୁଡ଼ିକର ଉତ୍ପତ୍ତି, ପ୍ରୟୋଗ-ବିଧି ସଂକ୍ରାନ୍ତୀୟ ତଥ୍ୟଗୁଡ଼ିକୁ ସେ ଓ ତାଙ୍କର ସହଯୋଗୀମାନେ ଜଗନ୍ନାଥ ରାଓ, ଗୋପୀନାଥ ନନ୍ଦ, ବହୁ ଇଂରେଜ ଓ ଜର୍ମାନ୍ ଗବେଷକଙ୍କ ପ୍ରକାଶିତ ଗ୍ରନ୍ଥରୁ ଏବଂ ଅନ୍ୟ ପ୍ରକାଶିତ ଓ ଅପ୍ରକାଶିତ ସଂସ୍କୃତ ଓ ଓଡ଼ିଆ ଗ୍ରନ୍ଥ ପୋଥିପତ୍ରମାନଙ୍କରୁ ସଂଗ୍ରହ କରିଥିଲେ ।

ଓଡ଼ିଆ ଲୋକଙ୍କ ମୁଖଭାଷା ସେ ଓକିଲାତି ଏବଂ ବିଭିନ୍ନ କାର୍ଯ୍ୟରେ ବିଭିନ୍ନ ଅଞ୍ଚଳକୁ ଯିବା ସମୟରେ ବିଭିନ୍ନ ଅଞ୍ଚଳର ବିଦ୍ୱାନ୍‌ମାନଙ୍କ ସାହାଯ୍ୟରେ ସଂଗ୍ରହ କରିଥିଲେ । ରାସ୍ତାଘାଟ, ମେଳା ମହୋତ୍ସବ, ହାଟ ବଜାର, ରାଜପରିବାର ଯେଉଁଠି ଯେଉଁ ଶବ୍ଦମାନ ଶୁଣୁଥିଲେ, ତାହା ସେ ସଂଗ୍ରହ କରୁଥିଲେ । ଦେଶାଂଶ ପ୍ରଚଳିତ ଗ୍ରାମ୍ୟ, ବୈଜ୍ଞାନିକ ଶବ୍ଦ, ବଙ୍ଗ, ବିହାର, ମାନ୍ଦ୍ରାଜ, ମଧ୍ୟପ୍ରଦେଶ ଏବଂ ଓଡ଼ିଶାର ଗଡ଼ଜାତମାନଙ୍କରେ ଦେଶାଂଶ ପ୍ରଚଳିତ ଗ୍ରାମ୍ୟ, ପ୍ରାଚୀନ ଏବଂ ବ୍ୟାବହାରିକ ଶବ୍ଦ ସଂଗ୍ରହ କଲେ । ଦଲିଲ ଦସ୍ତାବିଜରେ ବ୍ୟବହୃତ ହେଉଥିବା ପାର୍ଶୀ ଓ ଉର୍ଦ୍ଦୁଭାଷାମିଶା ଭାଷା କଚେରୀମାନଙ୍କରୁ ସଂଗ୍ରହ କରୁଥିଲେ ।

ଶବ୍ଦ ସଂଗ୍ରହ କାର୍ଯ୍ୟରେ ତାଙ୍କୁ ରମ୍ଭାର ଭକ୍ତଚରଣ ପତି, ସମ୍ବଲପୁରର ଗୋପୀନାଥ ଶତପଥୀ, ଗାଙ୍ଗପୁରର ଚୂଡ଼ାମଣି ନାୟକ, ମେଦିନୀପୁରର ରାଧାନାଥ ପତି, ସିଂହଭୂମିର କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ଜୟପୁରର ବିକ୍ରମଦେବ ବର୍ମା, ଗଞ୍ଜାମର ଜୟକୃଷ୍ଣ ଦ୍ୟାଉପଟ୍ଟନାୟକ, ବାଲୁଗାଁର ଡାକ୍ତର ରାଧାଚରଣ ପଣ୍ଡା, କଟକ ବାପ୍ଟିଷ୍ଟ ମିସନାରୀ ପାଦ୍ରି ହୁବେଲ ସାହେବ ପ୍ରଭୃତି ସାହାଯ୍ୟ କରିଥିଲେ । ସେ ମଧ୍ୟ ବିଭିନ୍ନ ଅଞ୍ଚଳରୁ ସାନ୍ତାଳୀ, କନ୍ଧ, କୋଲ୍‌ହ ପ୍ରଭୃତି ଆଦିବାସୀ ଶବ୍ଦ, ଲରିଆ, ସମ୍ବଲପୁରୀ, ଛତିଶଗଡ଼ି ପ୍ରଭୃତି ଓଡ଼ିଆ ଭାଷାର ଔପଭାଷିକ ଶବ୍ଦ ପ୍ରଭୃତି ସଂଗ୍ରହ କଲେ ।

ଏହିପରି ଭାବରେ ୧୯୧୩ ମସିହାରୁ ୧୯୧୯ ମସିହା ପର୍ଯ୍ୟନ୍ତ ସାତ ବର୍ଷରେ ହଜାର ହଜାର ଶବ୍ଦ ସଂଗୃହୀତ ହୋଇଥିଲା । ତାହାପରେ ୧୯୧୯ ମସିହା ଅକ୍ଟୋବର ମାସରୁ ୧୯୨୭ ମସିହା ପର୍ଯ୍ୟନ୍ତ ଶବ୍ଦଗୁଡ଼ିକର ସଜ୍ଜୀକରଣ ଏବଂ ପାଣ୍ଡୁଲିପି ପ୍ରସ୍ତୁତିର ପ୍ରାଥମିକ କାର୍ଯ୍ୟ ହେଲା । ୧୯୨୮ ମସିହାରୁ ସଂମ୍ମାର୍ଜନ କାର୍ଯ୍ୟ ଆରମ୍ଭହୋଇ ୧୯୩୦ ମସିହାରେ ଶେଷ ହେଲା ।

ଏହି କାର୍ଯ୍ୟରେ ତାଙ୍କୁ ଦୁଇ ଜଣ ଓଡ଼ିଆଭାଷୀ ସଂସ୍କୃତ ପଣ୍ଡିତ, ଦୁଇଜଣ ଅଣ୍ଡର ଗ୍ରାଜୁଏଟ୍, ଦୁଇଜଣ ସଂସ୍କୃତ ଭାଷା ଓ ସାହିତ୍ୟରେ ବିଦ୍ୱାନ୍ ଏବଂ ପୀତାମ୍ବରୀ ଦେବୀ ସାହାଯ୍ୟ କରୁଥିଲେ । ଏହା ବ୍ୟତୀତ ଓଡ଼ିଶା ଏବଂ ଓଡ଼ିଶା ବାହାରର ବହୁ ବିଦ୍ୱାନ୍ ବ୍ୟକ୍ତି ତାଙ୍କୁ ଏ କାର୍ଯ୍ୟରେ ଆନ୍ତରିକ ଭାବରେ ସାହାଯ୍ୟ କରୁଥିଲେ । ସେମାନଙ୍କ ମଧ୍ୟରେ ପଣ୍ଡିତ କୁଳମଣି ଦାଶ, ରାମଚନ୍ଦ୍ର ରଥ, ନାରୀକବି ଅପର୍ଣ୍ଣା ଦେବୀ, ମହାରାଜା ବିକ୍ରମ ଦେବ ବର୍ମା, ଶଶିଭୂଷଣ ରଥ, ରାଧାନାଥ ରଥ, ରେଭେନ୍ସା କଲେଜର ଇଂରାଜୀ ଅଧ୍ୟାପକ ନିରଞ୍ଜନ ନିୟୋଗୀ ପ୍ରଭୃତି ପ୍ରଧାନ । ଓଡ଼ିଶା ଡିଭିଜନର କମିସନର ଟପ୍ଲିସ୍ ସାହେବ ପ୍ରମୁଖ ଇଂରାଜୀ, ଯତୀନ୍ଦ୍ର ନାରାୟଣ ରାୟ ଓ ପଣ୍ଡିତ ସତ୍ୟଶଙ୍କର ମୁଖର୍ଜୀ ବଙ୍ଗଳା, ପଣ୍ଡିତ ରାମଚନ୍ଦ୍ର ଝା ଏବଂ ରାମ ଲୋଚନ ଶରଣ ହିନ୍ଦୀରେ ଶୁଦ୍ଧ ପାଠ ନିର୍ଣ୍ଣୟ କରୁଥିଲେ । ଓଡ଼ିଆ ଭାଷା ସମସ୍ୟାଗୁଡ଼ିକ ସମାଧାନ କରୁଥିଲେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି, ପଣ୍ଡିତ କୁଳମଣି ଦାଶ, ଅଗଣି ଦାଶ, କୃଷ୍ଣଚନ୍ଦ୍ର ସେନଗୁପ୍ତ, ଚିନ୍ତାମଣି ମହାନ୍ତି ପ୍ରଭୃତି । ପ୍ରୁଫ୍ ସଂଶୋଧନ କାର୍ଯ୍ୟରେ ସାହାଯ୍ୟ କରୁଥିଲେ ବିଶ୍ୱନାଥ କର, ରାମଚନ୍ଦ୍ର ରଥ, ପଣ୍ଡିତ କୁଳମଣି ଦାଶ, ପଣ୍ଡିତ ନୀଳକଣ୍ଠ ଦାସ ଏବଂ ପଣ୍ଡିତ କୃଷ୍ଣଚନ୍ଦ୍ର କର ପ୍ରଭୃତି । ତ୍ରୁଟିଶୂନ୍ୟ ମୁଦ୍ରଣ ନିମିତ୍ତ ଭାଷାକୋଷ ବିଶ୍ୱନାଥ କରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଉତ୍କଳ ସାହିତ୍ୟ ପ୍ରେସରେ ମୁଦ୍ରିତ ହେଉଥିଲା । ୧୯୩୫ ମସିହାରେ ବିଶ୍ୱନାଥ କରଙ୍କର ମୃତ୍ୟୁ ପରେ ପଣ୍ଡିତ କୃଷ୍ଣଚନ୍ଦ୍ର କର ତାଙ୍କୁ ମୁଦ୍ରଣ କାର୍ଯ୍ୟରେ ବିଶେଷ ସାହାଯ୍ୟ କରିଥିଲେ । ଶବ୍ଦ ସଂଗ୍ରହଠାରୁ ଆରମ୍ଭକରି ସଜ୍ଜୀକରଣ, ଅର୍ଥ ଲିଖନ ଓ ସଂମ୍ମାର୍ଜନ, ମୁଦ୍ରଣ ଓ ବନ୍ଧେଇ ପର୍ଯ୍ୟନ୍ତ ସବୁ କାର୍ଯ୍ୟ ପ୍ରହରାଜ ନିଜେ ତଦାରଖ କରୁଥିଲେ ।

ଭାଷାକୋଷ ଏକ ଚତୁର୍ଭାଷିକ ଅଭିଧାନ ହୋଇଥିବାରୁ ଏଥିରେ ହିନ୍ଦୀ, ବଙ୍ଗଳା ଓ ଇଂରାଜୀ ଭାଷାର ପଣ୍ଡିତମାନେ ପ୍ରତ୍ୟକ୍ଷଭାବରେ ଅଂଶ ଗ୍ରହଣ କରିଥିଲେ । ଗ୍ରନ୍ଥରେ ସଂଯୋଜିତ ଓଡ଼ିଆ ଶବ୍ଦଗୁଡ଼ିକୁ ହିନ୍ଦୀ, ବଙ୍ଗଳା, ଇଂରାଜୀ ଲିପିରେ ଉଲ୍ଲେଖ କରାଯିବା ସଙ୍ଗେ ସଙ୍ଗେ ସେଗୁଡ଼ିକର ପାରିଭାଷିକ ଅର୍ଥ ସମ୍ପର୍କରେ ମଧ ସୂଚନା ଦିଆଯାଇଥିଲା । ଭାଷାକୋଷର ଷଷ୍ଠ ଓ ସପ୍ତମ ଭାଗମାନ ଗୋଟିଏ ଗୋଟିଏ ଜ୍ଞାନକୋଷ ରୂପ ପାଇଛି । ଜ୍ଞାନ-ବିଜ୍ଞାନର ବିଭିନ୍ନ ବିଭାଗରେ ପାଣ୍ଡିତ୍ୟ ଅର୍ଜନ କରିଥିବା ବିଶେଷଜ୍ଞମାନେ ବିଭିନ୍ନ ବିଷୟରେ ଆଲୋଚନାମାନ ପ୍ରସ୍ତୁତ କରୁଥିଲେ । ସେମାନଙ୍କ ମଧରେ ଜ୍ୟୋତିଷବିଶାରଦ ବାଇକୋଳି ମହାପାତ୍ର, ଜଗନ୍ନାଥ ତ୍ରିପାଠୀ, ବିକ୍ରମ ଦେବ ବର୍ମା, ବିଚ୍ଛନ୍ଦଚରଣ ପଟ୍ଟନାୟକ, କେଦାରନାଥ ମହାପାତ୍ର, ବିପିନ୍ ବିହାରୀ ରାୟ, କୁଳମଣି ଦାଶ, ସୁନ୍ଦରାନନ୍ଦ ବିଦ୍ୟାବିନୋଦ, ଜଗବନ୍ଧୁ ସିଂହ, ଲକ୍ଷ୍ମୀନାରାୟଣ ସାହୁ ପ୍ରଭୃତି ଅନ୍ତର୍ଭୁକ୍ତ ଥିଲେ । ସୁତରାଂ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ

ଭାଷାକୋଷ ଏକ ନିରୁତା ଅଭିଧାନ ଗ୍ରନ୍ଥ ନୁହେଁ, ଏହା ଜ୍ଞାନକୋଷଭିତ୍ତିକ ଏକ କୋଷଗ୍ରନ୍ଥ । ଏହାର ପ୍ରସ୍ତୁତିରେ ଓଡ଼ିଶା ଏବଂ ଓଡ଼ିଶା ବାହାରର ବହୁ ବିଦ୍ୱାନ୍ ପଣ୍ଡିତମାନଙ୍କର ବିଶେଷ ଅବଦାନ ଅଛି ।

୧୯୨୭ ମସିହା ଫେବୃୟାରୀ ୨୬ ତାରିଖରେ ପ୍ରାଦେଶିକ 'ଭାଷା ବିବର୍ଦ୍ଧନ ସମିତି' (ଭର୍ଣ୍ଣାକୁଲାର ଡେଭଲପ୍‌ମେଣ୍ଟ କମିଟି)ର ପ୍ରଥମ ଅଧିବେଶନ କଟକରେ ଅନୁଷ୍ଠିତ ହୋଇଥିଲା । ସାର୍ ଆଲି ଇମାମ୍ ଏହାର ସଭାପତି ଥିଲେ । ଏଥିରେ ଉତ୍କଳଭାଷୀ ଅଞ୍ଚଳର ସର୍ବଜନ ବ୍ୟବହୃତ ଶବ୍ଦସମନ୍ୱିତ ଏକ କୋଷ ଗ୍ରନ୍ଥ ସଂକଳନ ପାଇଁ ସିଦ୍ଧାନ୍ତ ହେଲା । ଏ ସଭାର କର୍ମକର୍ତ୍ତାମାନଙ୍କ ପାଖରେ ପ୍ରହରାଜ ନିଜ ଅଭିଧାନର ପାଣ୍ଡୁଲିପି ଦେଖାଇଲେ । ରେଭରେଣ୍ଡ ଏଚ୍.ଡ଼ବ୍ଲିଉ.ପେକ୍ (H.W. Peck) ତାର ଉଚ୍ଚ ପ୍ରଶଂସା କଲେ । ପେକ୍ ସାହେବ ଆଗରୁ ଗୋଟିଏ ଓଡିଆ-ଇଂରାଜୀ ଅଭିଧାନ କଟକ ମିଶନ ପ୍ରେସ୍‌ରେ ପ୍ରକାଶ କରିଥିଲେ ଏବଂ ଓଡ଼ିଆ ଭାଷାରେ ତାଙ୍କର ଦକ୍ଷତା ଥିଲା । ପେକ୍ ସାହେବଙ୍କ ପ୍ରଶଂସା ସହିତ ବିଶ୍ୱନାଥ କର, ଶିକ୍ଷାବିଭାଗର ଡାଇରେକ୍ଟର ଲାମ୍ବର୍ଟ ସାହେବ, ପଣ୍ଡିତ ଗୋପବନ୍ଧୁ ଦାସ ଏବଂ ସମାଜ, ଆଶା, ଉତ୍କଳ ସାହିତ୍ୟ ସମେତ ଓଡିଶାର ସବୁ ପତ୍ରପତ୍ରିକା ତାର ଉଚ୍ଚ ପ୍ରଶଂସା କଲେ । ୧୯୨୯ ମସିହାରେ ପେକ୍ ସାହେବ ବିହାର-ଓଡ଼ିଶା ସରକାରଙ୍କ ପାଖରେ ଏହି ଅଭିଧାନ ମୁଦ୍ରଣର ଏକ ଆନୁମାନିକ ବ୍ୟୟ ତିରିଶ ହଜାର ଟଙ୍କାର ହିସାବ ଦାଖଲ କଲେ । ବିହାର-ଓଡ଼ିଶା ସରକାରଙ୍କ ସୁପାରିସ୍‌ରେ କେନ୍ଦ୍ର ସରକାରଙ୍କଠାରୁ ୧୯୦୦୦ (ଉଣେଇଶ ହଜାର) ଟଙ୍କା ଅଭିଧାନ ମୁଦ୍ରଣ ପାଇଁ ସାହାଯ୍ୟ ଦେବାକୁ ନିର୍ଦ୍ଦେଶ ଆସିଲା । ଗ୍ରନ୍ଥର ପ୍ରତି ସାରର ମୂଲ୍ୟ ୩୫ ଟଙ୍କା ନିର୍ଦ୍ଧାରିତ ହୋଇଥିଲା । ବିହାର-ଓଡ଼ିଶା ସରକାର ୧୧୪, ମାନ୍ଦ୍ରାଜ ସରକାର ୫୦, ବଙ୍ଗ ସରକାର ଦଶ ସାର ପୁସ୍ତକ କିଣିବାକୁ ପ୍ରତିଶ୍ରୁତି ଦେଇଥିଲେ । ଓଡ଼ିଶାର ସୋନପୁର, ମୟୂରଭଞ୍ଜ ସମେତ ବହୁ ରାଜ୍ୟର ରାଜା ଓ ଜମିଦାରମାନେ ବିଭିନ୍ନ ସଂଖ୍ୟାରେ ଅଭିଧାନ କିଣିବାକୁ ମଧ୍ୟ ପ୍ରତିଶ୍ରୁତି ଦେଇଥିଲେ ।

ଭାଷାକୋଷର ସଂମାର୍ଜନ କାର୍ଯ୍ୟ ଚାଲିଥିବା ସମୟରେ ପ୍ରହରାଜଙ୍କ ଓକିଲାତି ବ୍ୟବସାୟ ପୂରାପୂରି ବନ୍ଦହୋଇଯାଇଥିଲା କହିଲେ ଚଳେ । ଘରର କିମ୍ବା ଜମିଦାରିର ଦେଖାଶୁଣା ମଧ୍ୟ ସେ କରିପାରୁନଥିଲେ । ଭାଷାକୋଷ କାର୍ଯ୍ୟରେ ଦିନକୁ ୧୬/୧୭ ଘଣ୍ଟା ପରିଶ୍ରମ କରୁଥିଲେ । କାମ ଯେତିକି ଯେତିକି ବଢୁଥିଲା, ସେ ସେତିକି ଅର୍ଥାଭାବର ସମ୍ମୁଖୀନ ହେଉଥିଲେ । କର୍ମଚାରୀମାନଙ୍କ ଦରମା ଓ ଯାତାୟାତ ଖର୍ଚ୍ଚ, କାଗଜଓ ସ୍ୟାହି ପ୍ରଭୃତି କିଣା ଓ ମେସ୍ ଖର୍ଚ୍ଚ ଦେବାକୁ ଟଙ୍କା ନ ଥିଲା । ସେଥିଯୋଗୁଁ ନିଜ ଘରର ଗୋଟିଏ ଅଂଶ ଭଡ଼ା ଲଗାଇବାକୁ ବାଧ୍ୟହୋଇଥିଲେ । ଏଭଳି ଅବସ୍ଥାରେ ୧୯୨୮ ମସିହାରେ କଳାହାଣ୍ଡି ରାଜାଙ୍କଠାରୁ ଏକହଜାର ଟଙ୍କା ପାଇଲେ । ପରେ ପରେ ବର୍ଦ୍ଧମାନ ମହାରାଜା ୨୫୦, ଚିକିଟି ଜମିଦାର ୬୦୦ ଟଙ୍କା ଅନୁଦାନ ଦେଇଥିଲେ । ୧୯୩୦ ମସିହାରେ କେନ୍ଦ୍ର ସରକାର ୧୯୦୦୦ ଟଙ୍କା ଦେବାପାଇଁ ନିର୍ଦ୍ଦେଶ ଦେଲେ ଏବଂ ବିଭିନ୍ନ ରାଜା, ଜମିଦାର, ସରକାରୀ ଓ ବେସରକାରୀ ସଂସ୍ଥାମାନଙ୍କରୁ ଅର୍ଥଦାନ ଏବଂ ପୁସ୍ତକ କ୍ରୟର ପ୍ରତିଶ୍ରୁତି ମିଳିଲା । ତେଣୁ

ମୁଦ୍ରଣ କାର୍ଯ୍ୟ ଆଗେଇଲା । ପରେ ମୟୂରଭଞ୍ଜ ମହାରାଜା ପ୍ରତାପଚନ୍ଦ୍ର ଭଞ୍ଜ ଦେଓ ଟ.୮୦୦୦ (ଆଠ ହଜାର ଟଙ୍କା) ଦେବାକୁ ପ୍ରତିଶ୍ରୁତି ଦେଇଥିଲେ । ସେଥିପାଇଁ ତାଙ୍କ ବଡ଼ଭାଇ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଦେଓଙ୍କ ନାମାନୁସାରେ ଅଭିଧାନର ନାମକରଣ କରାଗଲା । ଭାଷାକୋଷର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ମୟୂରଭଞ୍ଜ ମହାରାଜା ପ୍ରହରାଜଙ୍କୁ ଆର୍ଥିକ ସାହାଯ୍ୟ ଏବଂ ମାନସିକ ପ୍ରେରଣା ଦେଉଥିଲେ ।

ଅଭିଧାନର କଳେବର ବୃଦ୍ଧି ଆର୍ଥିକ ଅନଟନର ଗୋଟିଏ ପ୍ରଧାନ କାରଣ ହୋଇଥିଲା । ପ୍ରଥମେ ୩୬୦୦(ଛତିଶ ଶହ) ପୃଷ୍ଠା ଏବଂ ଦୁଇଖଣ୍ଡରେ ଏହାର ମୁଦ୍ରଣ ଶେଷ ହେବ ବୋଲି ଅଟକଳ କରାଯାଇଥିଲା । ଖର୍ଚ୍ଚ କମାଇବା ପାଇଁ ଅଭିଧାନର କଳେବରର ସଂକୋଚନ ନିମିତ୍ତ ବନ୍ଧୁମାନେ ପରାମର୍ଶ ଦେଇଥିଲେ । ମାତ୍ର ଏତେ ସଂଖ୍ୟାରେ ଶବ୍ଦ ସଂଗ୍ରହ ହୋଇଥିଲା ଯେ ଗୃହୀତ ପଦ୍ଧତି ଅନୁସାରେ ଅଭିଧାନର କଳେବର ସହଜରେ ସଂକୁଚିତ ହୋଇପାରିଲା ନାହିଁ । ଅର୍ଥାଭାବ ଏବଂ ଅଭିଧାନର କଳେବର ବୃଦ୍ଧି ହେତୁ ମୁଦ୍ରଣ କାର୍ଯ୍ୟ ନିର୍ଦ୍ଧାରିତ ସମୟ ମଧ୍ୟରେ ଶେଷ ହୋଇପାରିଲା ନାହିଁ । ଅନେକ ରାଜା ଓ ଜମିଦାରଙ୍କଠାରୁ ପ୍ରତିଶ୍ରୁତି ଅନୁସାରେ ଟଙ୍କା ମଧ୍ୟ ମିଳିପାରିଲା ନାହିଁ । ମୁଦ୍ରଣ ଖର୍ଚ୍ଚ ଅଟକଳ ଅପେକ୍ଷା ଅତ୍ୟଧିକ ବୃଦ୍ଧି ପାଇବାରୁ ପ୍ରତି ଖଣ୍ଡ ପୁସ୍ତକର ମୂଲ୍ୟ ବୃଦ୍ଧି କରିବାକୁ ପଡ଼ିଲା । ମୂଲ୍ୟବୃଦ୍ଧି ହେତୁ କିଣିବାକୁ ପ୍ରତିଶ୍ରୁତି ଦେଇଥିବା ବ୍ୟକ୍ତିମାନେ ସେମାନଙ୍କର ସ୍ୱୀକୃତି ପ୍ରତ୍ୟାହାର କରିଥିଲେ ।

ଆର୍ଥିକ ସମସ୍ୟା ହେତୁ ଭାଷାକୋଷ ପୂର୍ବ-ନିର୍ଦ୍ଧାରିତ ସମୟ ମଧ୍ୟରେ ପ୍ରକାଶ ପାଇବା ସମ୍ଭବ ହେଉନଥିଲା । ୧୯୩୫ ମସିହା ସୁଦ୍ଧା ଅଭିଧାନ ସମାପ୍ତ ହେବାର କଥା ଥିଲା । ପୃଷ୍ଠାସଂଖ୍ୟା ବୃଦ୍ଧି ହେତୁ ଆବଶ୍ୟକ ପରିମାଣ ଅର୍ଥ ସଂଗ୍ରହ ନିମିତ୍ତ ଅନୁଦାନ ଓ ଗ୍ରାହକ ସଂଗ୍ରହ ପାଇଁ ପ୍ରହରାଜ ପ୍ରାୟ ସବୁ ଗଡ଼ଜାତ ରାଜ୍ୟର ରାଜା, ଜମିଦାର ଓ ବ୍ୟବସାୟୀ ଓ ମଠମହନ୍ତଙ୍କ ପାଖକୁ ଯାଇଥିଲେ ଏବଂ ବହୁ ଶିକ୍ଷାନୁଷ୍ଠାନ ବୁଲିଥିଲେ । ମୟୂରଭଞ୍ଜ ମହାରାଜା ପ୍ରତାପଚନ୍ଦ୍ର ଭଞ୍ଜ ଦେଓ, ପାଟଣାର ରାଜା ରାଜେନ୍ଦ୍ରନାରାୟଣ ସିଂହ ଦେଓ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଏବଂ ଜୟପୁର ମହାରାଜା ବିକ୍ରମ ଦେବ ବର୍ମା ତାଙ୍କୁ ଅର୍ଥ-ସାହାଯ୍ୟ ଦେଇଥିଲେ । ଓଡ଼ିଶାର ତତ୍‌କାଳୀନ ଶିକ୍ଷାବିଭାଗର ଇଂରେଜ କର୍ମକର୍ତ୍ତାମାନେ ଭାଷାକୋଷ ସଂକଳନକୁ ପ୍ରୋତ୍ସାହନ ଏବଂ ଆର୍ଥିକ ସହାୟତା କରିଥିଲେ । ବିହାର-ଓଡ଼ିଶା ଗଭର୍ଣ୍ଣର ସାର୍ ଜେ.ଡ଼ି.ସିଫ୍‌ଟନ, ହାଇକୋର୍ଟର ପ୍ରଧାନବିଚାରପତି ସାର୍ କୁଟନୀ ଟେରେଲ, ଶିକ୍ଷାବିଭାଗ ଡ଼ାଇରେକ୍ଟର ଜି.ଆର. ଫକସ୍, କଟକ ଟ୍ରେନିଂ କଲେଜର ଅଧ୍ୟକ୍ଷ ହ୍ୱିଟ୍‌ମୋର, କଲେକ୍ଟର ମାର୍‌ଉଡ୍ ଓ ଫିଲିପ୍ ସାହେବଙ୍କ ନାମ ଏ ସମ୍ପର୍କରେ ଉଲ୍ଲେଖନୀୟ ।

ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ସ୍ଥାନପାଇଥିବା ମୋଟ ଶବ୍ଦ ସଂଖ୍ୟା ଏକଲକ୍ଷ ପଞ୍ଚାଅଶୀ ହଜାର, ପୃଷ୍ଠାସଂଖ୍ୟା ନଅ ହଜାର ପାଞ୍ଚଶହ । ଏଥିରେ ଓଡ଼ିଆଭାଷାରେ ପ୍ରଚଳିତ, ଅପ୍ରଚଳିତ, ଲୋକକଥିତ, ଆଞ୍ଚଳିକ, ତତ୍‌ସମ ଓ ବୈଦେଶିକ ଶବ୍ଦମାନ ସଂକଳିତ ହୋଇଛି । ପ୍ରହରାଜ କହୁଥିଲେ, ଭାଷା ଏକ ଚିରସ୍ରୋତା ନଦୀ ଏବଂ ଜୀବନ୍ତ ବୃକ୍ଷ । ଜୀବନ୍ତ ଭାଷାର ଶବ୍ଦ ସଂଖ୍ୟା ବଢ଼ି ବଢ଼ି ଚାଲେ । ଲିଖିତ ଭାଷା ଲୋକମୁଖରେ କେତେ ବାଗରେ ବଦଳିଯାଏ;

ବଦଳିଯାଇଥିବା ଭାଷାର ରୂପ ପୁଣି ଲିଖିତ ରୂପ ନିଏ । କଥିତ ଭାଷାରେ ଓ ଲିଖିତ ସାହିତ୍ୟରେ ଯେଉଁ ଶବ୍ଦଗୁଡ଼ିକ ସାଧାରଣତଃ ବ୍ୟବହୃତ ହେବାର ଦେଖାଯାଏ, ସେଗୁଡିକର ଆକ୍ଷରିକ, ପ୍ରାକୃତିକ ଓ ପ୍ରଚଳିତ ଅର୍ଥ, ବ୍ୟବହାର, ଇତିହାସ, ପ୍ରକୃତି ଆଦି ଲିପିବଦ୍ଧ କରି ରଖିବା ଅଭିଧାନ ସଂକଳକଙ୍କ କର୍ତ୍ତବ୍ୟ । ଏହି ଶବ୍ଦଗୁଡିକର ଅଶୁଦ୍ଧତା ଓ ବିଶୁଦ୍ଧତା ନିରୂପଣ ଭାଷାତତ୍ତ୍ୱବିତ୍ ଓ ସାହିତ୍ୟିକମାନଙ୍କର ଧର୍ମ ।

ଗ୍ରାମ୍ୟ ଶବ୍ଦଗୁଡିକ ବ୍ୟତୀତ ସେ ତତ୍‌ସମ, ତଦ୍‌ଭବ ଏବଂ ବୈଦେଶିକ ଶବ୍ଦଗୁଡ଼ିକର ଉତ୍ପତ୍ତି, ପ୍ରୟୋଗ, ବ୍ୟାକରଣିକ ଓ ଆଭିଧାନିକ ତଥା ବ୍ୟଞ୍ଜିତ ରୂପ ସଂକ୍ରାନ୍ତରେ ଉଲ୍ଲେଖ କରିଛନ୍ତି । ଉଦାହରଣ ମାଧ୍ୟମରେ ଅନେକ କଥିତ ଓ ଲିଖିତ ଶବ୍ଦର ବୈଚିତ୍ର୍ୟ ମଧ୍ୟ ଦେଖାଇଛନ୍ତି । ମୁଖ୍ୟତଃ ଆରବୀ, ଇଂରାଜୀ, ଇଟାଲୀୟ, ଉର୍ଦ୍ଦୁ, ଗୁଜରାଟୀ, ଗ୍ରୀକ୍, ଜର୍ମାନ, ତୁର୍କ, ତେଲୁଗୁ, ତାମିଲ, ଦ୍ରାବିଡ଼, ପର୍ତ୍ତୁଗୀଜ୍,ଫରାସୀ, ବଙ୍ଗଳା, ମରହଟ୍ଟା, ହିନ୍ଦୀ, ହିବ୍ରୁ ଆଦି ଭାଷାର ଶବ୍ଦଗୁଡ଼ିକର ଓଡିଆ ରୂପାନ୍ତର ସମ୍ପର୍କରେ ନୋଟ୍ ପ୍ରଦାନ କରିଛନ୍ତି । ଏହା ବ୍ୟତୀତ ଗଣିତ, ଜ୍ୟୋତିଷ, ଆଇନ୍, ପ୍ରାଣୀବିଜ୍ଞାନ, ଜୀବବିଜ୍ଞାନ, ଉଦ୍‌ଭିଦବିଜ୍ଞାନ, ଜ୍ୟାମିତି, ଭୂଗୋଳ, ତର୍କ, ଦର୍ଶନଶାସ୍ତ୍ର ଆଦି ଜ୍ଞାନବିଜ୍ଞାନର ବିଭିନ୍ନ ବିଭାଗର ଶବ୍ଦଗୁଡ଼ିକ ସମ୍ପର୍କରେ ସୂଚନା ଦେଇଛନ୍ତି । ଏଥିପାଇଁ ସେ ସଂପୃକ୍ତ ବିଷୟର କୋଷଗ୍ରନ୍ଥ ଏବଂ ପଣ୍ଡିତମାନଙ୍କର ସାହାଯ୍ୟ ନେଇଛନ୍ତି । କୋର୍ଟ-କଚେରିରେ ପ୍ରଚଳିତ ଶବ୍ଦ ସଂକଳନ ଭାଷାକୋଷର ଅନ୍ୟ ଏକ ବିଶେଷତ୍ୱ । କାବ୍ୟ ନାଟକରେ ବିଶେଷ ଭାବରେ ବ୍ୟବହୃତ ଶବ୍ଦ ଓ କେତେକ ଶବ୍ଦର ବିପରୀତ ଅର୍ଥ ସଂପର୍କୀୟ ନୋଟ ମଧ୍ୟ ଏଥିରେ ସ୍ଥାନ ପାଇଛି ।

୧୯୩୦ ଓ ୧୯୪୦ ମସିହା ମଧ୍ୟରେ ସାତଖଣ୍ଡରେ ପ୍ରକାଶିତ ଏହି ଭାଷାକୋଷରେ ଏକ ଲକ୍ଷ ପଞ୍ଚାଅଶୀ ଶବ୍ଦ ନଅହଜାର ପାଞ୍ଚଶହ ତିନି ପୃଷ୍ଠାରେ ପ୍ରକାଶିତ ହୋଇଛି । ସେ କାଳରେ ଏହାର ମୁଦ୍ରଣରେ ପ୍ରାୟ ଏକଲକ୍ଷ ପଚିଶ ହଜାର ଟଙ୍କା ବ୍ୟୟ ହୋଇଥିଲା । ଏହି ଭାଷାକୋଷର ବିଭିନ୍ନ ଖଣ୍ଡ ବିଭିନ୍ନ ରାଜା, ମହାରାଜା ଏବଂ ଉଚ୍ଚ ଇଂରେଜ କର୍ତ୍ତୃପକ୍ଷଙ୍କ ନାମରେ ଉତ୍ସର୍ଗ କରାଯାଇଅଛି । ଏହି ମହାଗ୍ରନ୍ଥ ଶବ୍ଦ ସଂଗ୍ରହ, ସଜ୍ଜୀକରଣ, ସଂମାର୍ଜନୀକରଣ ଓ ମୁଦ୍ରଣ ପାଇଁ ୧୯୧୩ ମସିହାଠାରୁ ୧୯୪୦ ମସିହା ପର୍ଯ୍ୟନ୍ତ ୨୭ ବର୍ଷ ସମୟ ଲାଗି- ଯାଇଥିଲା । ତଥାପି ବହୁ ସଂଗୃହୀତ ଏବଂ ଅସଂଗୃହୀତ ଶବ୍ଦ ଭାଷାକୋଷର ଅନ୍ତର୍ଭୁକ୍ତ କରି ନପାରିଥିବାରୁ ପ୍ରହରାଜଙ୍କ ମନରେ ବହୁ ଅବଶୋଷ ରହିଯାଇଥିଲା । ଭାଷାକୋଷର ଦ୍ୱିତୀୟ ଖଣ୍ଡର ମୁଖବନ୍ଧରେ ଶ୍ରୀ ପ୍ରହରାଜ ଲେଖିଛନ୍ତି –

''ଏ ଗ୍ରନ୍ଥର କଳେବର ବୃଦ୍ଧି ହେବାର ଦେଖି ମୋର ମଙ୍ଗଳକାମୀ ବିଶିଷ୍ଟ ବନ୍ଧୁମାନେ ବାରମ୍ବାର ଅନୁରୋଧ ଓ ସୂଚନା କରୁଅଛନ୍ତି ଯେ, ଶବ୍ଦସଂଖ୍ୟା କମାଇଦିଆଯାଉ, ଏକାଧିକ ଆକାରରେ ବ୍ୟବହୃତ ଶବ୍ଦମାନଙ୍କର ଗୋଟିଏ ମାତ୍ର ଆକାର ରଖାଯାଉ, କଥିତ ଭାଷାରେ ଓ ଲେଖାରେ ଭିନ୍ନ ଭିନ୍ନ ଆକାରରେ ବ୍ୟବହୃତ ଶବ୍ଦମାନଙ୍କର କଥିତ ରୂପ ବାଦ୍‌ଦିଆଯାଉ ଏବଂ ସମାସନିଷ୍ପନ୍ନ କେତେକ ପଦ ଛାଡିଦିଆଯାଉ । କିନ୍ତୁ ମୁଁ ସଂଗ୍ରହକରି ପାଣ୍ଡୁଲିପିରେ ସ୍ଥାନ ଦେଇଥିବା କୌଣସି ଶବ୍ଦ ଉଠାଇଦେବାକୁ ମୋ ହାତ ଯାଉନାହିଁ । ବହୁ ସନ୍ତାନଙ୍କୁ

ପୋଷିବା ପାଇଁ ଦୁଃଖଭୋଗକରୁଥିବା କୌଣସି ମାତାଙ୍କୁ ଯେବେ ସନ୍ତାନପାଳନ ବ୍ୟୟ ଓ ଦୁଃଖ ଲାଘବାର୍ଥେ ସନ୍ତାନମାନଙ୍କ ମଧ୍ୟରୁ କେତେକଙ୍କୁ ତଡ଼ିଦେବାକୁ ବା ଜୀବନରେ ମାରିଦେବାକୁ ଉପଦେଶ ଦିଆଯାଏ, ତାହାହେଲେ ମାତା ସେ ଉପଦେଶ ପାଳନ କରି ପାରିବେଟି ? xxx ମାଆଙ୍କ ଚକ୍ଷୁରେ ତ ସବୁ ସନ୍ତାନ ସମାନ ଓ ଗଣ୍ଡିଧନ; ଏପରି କ୍ଷେତ୍ରରେ ମାତାଙ୍କ ପକ୍ଷରେ ଯାହା ଉତ୍ତର ଦେବା ସ୍ୱାଭାବିକ, ମୁଁ ମୋ ବନ୍ଧୁମାନଙ୍କୁ ନିମ୍ନ ଲିଖିତମତେ ସେହିତା ଉତ୍ତର ଦେଉଅଛି ।

'' କେତେ ଦୁଃଖ ପାଇ, ଜୀବନର ଅନ୍ୟ ସମସ୍ତ ଆଶା, ସୁଖ, କଳ୍ପନା ଓ ଉପାର୍ଜନରେ ଜଳାଞ୍ଜଳି ଦେଇ ୧୫ ବର୍ଷ ଅତିପାତ କରି ଯେଉଁମାନଙ୍କୁ ପାଇଅଛି ଓ ଗଣ୍ଡିଧନ କରି ସାଇତି ଅଛି, ମୁଁ ମରେଁ ସରେଁ, ପଥର ଭିକାରି ହୁଏଁ, ଉପାସ ରହେଁ, ଦୁଃଖ ପାଏଁ, ସୂତା କାଟେଁ, ଧାନ କୁଟେଁ ପଛକେ, ତାଙ୍କ ମଧ୍ୟରୁ କାହାର ତଣ୍ଟି ଚିପିଦେବାକୁ ମୋ ହାତ ଯିବନାହିଁ । ତାଙ୍କ ଜୀବନରେ ମୋ ଜୀବନ, ତାଙ୍କ ମରଣରେ ମୋ ମରଣ ।

''ବରଂ ଆଉ ବହୁ ସହସ୍ର ଶବ୍ଦ ମୁଁ ଯୋଗକରିପାରିଲି ନାହିଁ ବୋଲି ଗଭୀର ଆକ୍ଷେପ ରହିଗଲା । ସମୟ ଅଭାବରୁ, ଧନ ଅଭାବରୁ ଉପଯୁକ୍ତ କର୍ମୀ ଓ ସହକାରୀ ଅଭାବରୁ ଉତ୍ସାହ ଓ ସାହାଯ୍ୟ ଅଭାବରୁ, ସୁଯୋଗ ଓ ସୁବିଧା ଅଭାବରୁ, ଦେଶରେ ଅଭିଧାନ ଗ୍ରନ୍ଥ ଓ ପୁସ୍ତକାଗାର ଅଭାବରୁ, ବହୁ ସହସ୍ର ଘରୋଇ ଶବ୍ଦ, ଦେଶାଂଶ ପ୍ରଚଳିତ ଶବ୍ଦ, ଭିନ୍ନ ଭିନ୍ନ ବ୍ୟବସାୟ ଓ ସମାଜ ପ୍ରଚଳିତ ଶବ୍ଦ, ବିଜ୍ଞାନର ଓ ନାନା କଳାର ପାରିଭାଷିକ ଶବ୍ଦ ମୁଁ ସଂଗ୍ରହ କରି ପାରିଲି ନାହିଁ, ଉତ୍କଳଭାଷୀ ଅଞ୍ଚଳର ପୁରପଲ୍ଲୀମାନ ବୁଲି ପାରିଲି ନାହିଁ, ଉତ୍କଳ ଭାଷାରେ ମୁଦ୍ରିତ ସମସ୍ତ ପୁସ୍ତକ ପାଇପାରିଲି ନାହିଁ, କି ପଢ଼ିପାରିଲି ନାହିଁ । ଉତ୍କଳ ଭାଷୀ ଅଞ୍ଚଳରେ ଘରେ ଘରେ, ଗାଏଁ ଗାଏଁ ସାଇତା ହୋଇ ପୋକଖାଉଥିବା ଓ ଉଇ ଖାଉଥିବା ସହସ୍ର ପୁରୁଣା ପୋଥି ଦେଖିପାରିଲି ନାହିଁ । ବଙ୍ଗଭାଷୀ ଓ ହିନ୍ଦୀଭାଷୀ ଅଞ୍ଚଳମାନ ବୁଲି ପ୍ରତ୍ୟେକ ଓଡିଆ ଶବ୍ଦର ବଙ୍ଗଳା ଓ ହିନ୍ଦୀ ପ୍ରତିଶବ୍ଦ ଦେଇପାରିଲି ନାହିଁ । ଗଞ୍ଜାମ ଓ ବିଶାଖାପାଟଣା ଅଞ୍ଚଳରେ ଓଡ଼ିଆମାନଙ୍କଦ୍ୱାରା ବ୍ୟବହୃତ ଶବ୍ଦମାନଙ୍କ ଉପରେ ତେଲଗୁ ଭାଷାର ପ୍ରଭାବ ଓ ବସ୍ତର ରାଜ୍ୟ ପ୍ରଚଳିତ ଭତରୀ ଭାଷା ଉପରେ ମରହଟ୍ଟୀ ଭାଷାର ପ୍ରଭାବ ଦେଖାଇପାରିଲିନାହିଁ । ଓଡ଼ିଆ ଶବ୍ଦମାନଙ୍କର ମୂଳ ଓ ଇତିହାସ ଖୋଜି ପାଇବା ପାଇଁ ସଂସ୍କୃତ, ପ୍ରାକୃତ ଓ ପାଲୀ ଭାଷାର ପ୍ରମାଣିତ ଅଭିଧାନ ଗ୍ରନ୍ଥମାନ ଆଲୋଚନା କରିପାରିଲିନାହିଁ । ନେପାଳ, ଚୀନ୍, ଜାଭା ଓ ବାଲୀ ଦ୍ୱୀପ, ଶ୍ୟାମ, ଚମ୍ପା ଓ କାମ୍ବୋଡିଆ, ଆସାମ ଓ ସିଂହଳ ଆଦି ଦେଶମାନ ପୁରାକାଳରେ ଯେଉଁ ଓଡିଆ (କଳିଙ୍ଗ) ସଭ୍ୟତାର ସଂସ୍ରବରେ ଆସିଥିଲେ, ସେ ଦେଶମାନଙ୍କରେ ଏବଂ ତତ୍ତତ୍ ଭାଷାରେ ଓଡିଆଭାଷା କି ଚିହ୍ନ ଛାଡିଯାଇଅଛି, ଏହା ସ୍ଥିର କରିପାରିଲି ନାହିଁ ।

''ପ୍ରଭୁ କରନ୍ତୁ, ଦିନ ଆସୁ, ଯେଉଁ ଦିନ ଭାରତର ପ୍ରଚଳିତ ଭାଷାମାନଙ୍କ ମଧ୍ୟରେ ଓଡିଆ ଭାଷା କେଡ଼େ ପ୍ରାଚୀନ, କେଡ଼େ ଶବ୍ଦବହୁଳ, କେଡ଼େ ଶବ୍ଦ ଓ ଧ୍ୱନି ପ୍ରକାଶକ୍ଷମ ଭାଷା-ତତ୍ତ୍ୱାନୁସନ୍ଧିତ୍ସୁମାନଙ୍କର ଏହା କେଡ଼େ ଆଦରର ସାମଗ୍ରୀ, କି ଧର୍ମନୀତି, କି ରାଜନୀତି,

କି ସମାଜନୀତ, କି ଯୁଦ୍ଧନୀତି, କି ନୌବିଦ୍ୟା, କି ଶିଳ୍ପକଳା, କି ଚିତ୍ରକଳା, କି ବିଜ୍ଞାନ, କି ପ୍ରତ୍ନତତ୍ତ୍ୱ, କି ପୁରାଣ, କି ସାହିତ୍ୟ, କି ଚିକିତ୍ସାଶାସ୍ତ୍ର, କି ଜ୍ୟୋତିଷ, କି ଇତିହାସ, କି ଆୟୁର୍ବେଦ, କି ଧନୁର୍ବେଦ, କି ସଙ୍ଗୀତ, କି ବ୍ୟାକରଣ, କି ଅଳଙ୍କାର, ସବୁ କ୍ଷେତ୍ରରେ ଓଡିଆ ଭାଷାରେ କି ପ୍ରଚ୍ଛନ୍ନ ରତ୍ନମାନ ଲୋକଚକ୍ଷୁର ଅଗୋଚରରେ ରହିଅଛି, ଓଡିଆମାନେ ପ୍ରାଚୀନ କଳିଙ୍ଗରୁ ବାହାରି ଦେଶବିଦେଶରେ ସାତସମୁଦ୍ର ଲଙ୍ଘି ପାରିରେ କି ସଭ୍ୟତା କି ପ୍ରଭାବ ବିସ୍ତାର କରି କି ମହାଦୀକ୍ଷା ପ୍ରଚାର କରିଯାଇଅଛନ୍ତି ଏହା କେବଳ ଭାରତବାସୀ ନୁହନ୍ତି, କେବଳ ପ୍ରାଚ୍ୟ ପଣ୍ଡିତମଣ୍ଡଳୀ ନୁହନ୍ତି, କେବଳ ପାଶ୍ଚାତ୍ୟ ପଣ୍ଡିତମଣ୍ଡଳୀ ନୁହନ୍ତି, ସମସ୍ତ ସଭ୍ୟ ଜଗତର ବିଦ୍ୱଜ୍ଜନମଣ୍ଡଳୀ ଅନୁଭବ କରି ଭାଷା ଓ ସାହିତ୍ୟ ଜଗତ୍‌ରେ ଓ ସଭ୍ୟ ସମାଜରେ ଓଡ଼ିଆଭାଷାକୁ, ଓଡ଼ିଆ ସାହିତ୍ୟକୁ, ଓଡ଼ିଆ ଜାତିକୁ ତାଙ୍କ ପ୍ରାପ୍ୟ ସସମ୍ମାନ ଆସନ ଦେବାକୁ କୁଣ୍ଠିତ ହେବେ ନାହିଁ । ଏ ଦିନ ଦିନେ ନିଶ୍ଚୟ ଆସିବ । ସେ ଦିନ ଏ କ୍ଷୀଣବଳ, ନଗଣ୍ୟ ସଂଗ୍ରାହକ ଏ ଜନ୍ମରେ ହେଉ, ଜନ୍ମାନ୍ତରରେ ହେଉ, ଯେଉଁଠାରେ ଯେଉଁ ଅବସ୍ଥାରେ ଯେଉଁ ସତ୍ତା ଧାରଣ କରି ବିଦ୍ୟମାନ ଥିବ, ସେ ବା ତାହାର ଆତ୍ମା ଏହା ଦେଖି ପରମ ସୁଖ ଅନୁଭବ କରିବ ଏବଂ ଏହି ଅଭ୍ୟୁଦୟ ଦୁର୍ବଳ ଓ ନଗଣ୍ୟ ପ୍ରାଣୀ ଆଜି ସୂତ୍ରପାତ କରିଥିବା କ୍ଷୀଣ ଉଦ୍ୟମରୂପ ବୀଜର ଅଙ୍କୁର, ଶାଖା, ପଲ୍ଲବ, ପୁଷ୍ପ ଓ ଫଳ ଥିବାର ଜାଣି ସେ ବା ତାହାର ଆତ୍ମା ନିର୍ବାଣ ଲାଭକରି ପରମାତ୍ମାରେ ଲୀନହେବ ।

''ଓଡିଆ ଭାଷା ଶବ୍ଦସମ୍ପଦ, ଧ୍ୱନିସମ୍ପଦ ଓ ଭାବସମ୍ପଦରେ ଆଧୁନିକ ଭାରତର ଅନେକ ଭାଷାଠାରୁ ନ୍ୟୂନ ନୁହେଁ । ଓଡ଼ିଆଭାଷାର ଅଭ୍ୟୁଦୟ ଯୁଗରେ ଅନେକ ଆଧୁନିକ ଭାଷାର ଗର୍ଭାଧାନ ମଧ୍ୟ ହୋଇନଥିଲା । ଏହି ପୁଣ୍ୟ ଦେଶ ବହୁ ଧର୍ମସଂସ୍କାରକ, ମହାକବି, ମହାପଣ୍ଡିତ, ଜ୍ୟୋତିଷିକ, ଭାଷାତତ୍ତ୍ୱବିତ୍, ଶାସନନୀତିଜ୍ଞ, ଉଦାରନୈତିକ ମହାପୁରୁଷ ମାନଙ୍କ ଜନ୍ମଭୂମି, କର୍ମଭୂମି ଓ ଲୀଳାଭୂମି ଥିଲା, ଏହା ଜଗତ୍ ଜାଣି ଦିନେ ସ୍ତମ୍ଭୀଭୂତ ହେବ । ଓଡ଼ିଆ ଜାତିର ପ୍ରାଚୀନ ସଭ୍ୟତା ଯେଉଁପରି ବିଭବମୟ ଓ ଆଲୋକମୟ ଥିଲା, ଦିନେ ଭବିଷ୍ୟତ୍‌ରେ ମଧ୍ୟ ସେହିପରି ଆଲୋକମୟ ହେବ । ପ୍ରାଚୀ ଦେଶର ପ୍ରାଚୀ ଗଗନରେ ପ୍ରାଚୀଜ୍ୟୋତିଃ ଉଇଁଆସିବାର ପୂର୍ବ ଲକ୍ଷଣ ଓ ଆଭାସ ଦେଖାଯାଉଅଛି । ପ୍ରଭୁ ସେ ଦିନକୁ ନିକଟବର୍ତ୍ତୀ କରନ୍ତୁ ।'' [ଭାଷାକୋଷାଶ୍ରମ, କଟକ - ଅଗଷ୍ଟ, ୧୯୩୨]

ଭାଷାକୋଷର ଦ୍ୱିତୀୟ ଖଣ୍ଡର ମୁଖବନ୍ଧରେ ପ୍ରହରାଜଙ୍କ ଏହି ଲେଖାରୁ ତାଙ୍କର ଭାଷାକୋଷର ବିରାଟ ପରିକଳ୍ପନା ଏବଂ ଓଡ଼ିଆଭାଷାର ମହାନତା ଅନୁଭୂତିର ବିଶେଷ ସୂଚନା ମିଳେ । ଭାଷାକୋଷ ସଂକଳନରେ ତାଙ୍କର ନିଷ୍ଠା, ଆନନ୍ଦ ଓ ଉତ୍ସାହ, ଓଡ଼ିଆ ଜାତିର ଓ ଭାଷାର ଗୌରବମୟ ଇତିହାସ ପାଇଁ ତାଙ୍କର ଗର୍ବ ଏବଂ ଓଡ଼ିଆ ଜାତି ଓ ଭାଷାର ଭବିଷ୍ୟତ୍ ଅଭ୍ୟୁଦୟ ପାଇଁ ତାଙ୍କର କାମନା ଓ ପ୍ରାର୍ଥନା ମଧ ଏ ଲେଖାରୁ ସ୍ପଷ୍ଟଭାବରେ ଅନୁମିତ ହୁଏ । ଓଡ଼ିଆ ଭାଷା ଓ ଜାତିକୁ ସେ କିପରି ଭଲପାଉଥିଲେ, ଜାତିର ଏବଂ ଭାଷାର ଅଭ୍ୟୁଦୟ ପାଇଁ କିପରି ନିଜର ସୁଖ, ସମ୍ପଦ ଓ ଜୀବନକୁ ଉତ୍ସର୍ଗ କରିଥିଲେ ଏବଂ ଜାତିର ଉଜ୍ଜ୍ୱଳ ଭବିଷ୍ୟତ୍ ପାଇଁ ଆଶାବାଦୀ ଥିଲେ, ତାହାର ମଧ ଏ ଲେଖାରୁ ସ୍ପଷ୍ଟ ସୂଚନା ମିଳେ ।

ଏ ବିରାଟ ଭାଷାକୋଷ ପ୍ରଣୟନକୁ ସେ ଓଡ଼ିଆଭାଷାର ଅଭ୍ୟୁଦୟର ସୂତ୍ରପାତ ବୋଲି ମନେକରୁଥିଲେ ଏବଂ ଭବିଷ୍ୟତ୍ ବଂଶଧରମାନେ ତାଙ୍କର କ୍ଷୀଣ ଉଦ୍ୟମକୁ ଅଧିକରୁ ଅଧିକ ବଳବାନ୍ କରିବେ ବୋଲି ଆଶାକରୁଥିଲେ ।

ଭାଷାକୋଷ ପରିକଳ୍ପନାର ୨୭ ବର୍ଷ କାର୍ଯ୍ୟପରେ ତାହାର ସଂପୂର୍ଣ୍ଣ ସାତଖଣ୍ଡ ମୁଦ୍ରଣ ୧୯୪୦ ମସିହା ସେପ୍ଟେମ୍ବର ମାସରେ ଶେଷହୋଇଥିଲା । ସେତେବେଳେ ପ୍ରହରାଜ ପ୍ରକାଶ କରିଥିଲେ ଯେ, ସଙ୍କଳିତ ଶବ୍ଦଗୁଡ଼ିକ ବ୍ୟତୀତ ପ୍ରାୟ ପାଞ୍ଚ ହଜାର ଦେଶାଂଶ ପ୍ରଚଳିତ, ବ୍ୟାବସାୟିକ, ଗ୍ରାମ୍ୟ ଓ ବୈଜ୍ଞାନିକ ଶବ୍ଦ ଅମୁଦ୍ରିତ ଭାବରେ ରହିଲା । ସେ ମଧ୍ୟ କହିଥିଲେ ଯେ, ଅନ୍ୟୂନ ପନ୍ଦର ହଜାର ଶବ୍ଦ ସଂଗୃହୀତ ହୋଇ ତାଙ୍କ ନିକଟରେ ରହିଥିଲା ଏବଂ ବଙ୍ଗ, ବିହାର, ମାନ୍ଦ୍ରାଜ, ମଧ୍ୟପ୍ରଦେଶ ଏବଂ ଓଡ଼ିଶା ଗଡ଼ଜାତମାନଙ୍କର ଗଳିକନ୍ଦିରେ ଖୋଜିଲେ ଅନ୍ତତଃ ଆଉ ଦଶହଜାର ପ୍ରାଦେଶିକ, ଦେଶାଂଶ ପ୍ରଚଳିତ, ଗ୍ରାମ୍ୟ, ପ୍ରାଚୀନ ବୈଜ୍ଞାନିକ ଓ ବ୍ୟାବହାରିକ ଶବ୍ଦ ସଂଗୃହୀତ ହୋଇପାରିବ ।

ଭାଷାକୋଷ ସଂପୂର୍ଣ୍ଣ ପ୍ରକାଶ ପାଇବା ପରେ କେତେକ ସାହିତ୍ୟିକ ଓ ରାଜନୈତିକ ବ୍ୟକ୍ତି ତାଙ୍କର ସମାଲୋଚନା କରିଥିଲେ । ସେ ସମୟରେ ଇଂରେଜମାନଙ୍କୁ ସ୍ତୁତି ଓ କଂଗ୍ରେସ ଲୋକଙ୍କୁ ନିନ୍ଦା କରିବା ହେତୁ ପ୍ରହରାଜ କଂଗ୍ରେସ ଲୋକଙ୍କର ଏବଂ ବହୁ ସାଧାରଣ ଲୋକଙ୍କର ଅପ୍ରିୟ ହୋଇଥିଲେ । ଇଂରେଜ କର୍ତ୍ତୃପକ୍ଷଙ୍କୁ ଏବଂ ରାଜା ଜମିଦାର ପ୍ରଭୃତିଙ୍କୁ ପ୍ରଶଂସା କରି ସାର ଜନ୍ ହବାକ୍, ଏନ୍, ଏଫ୍ ପେକ, ବଡ଼ଲାଟ୍ ଲର୍ଡ଼ ଲିନ୍‌ଲିଥିଗୋ, ଜୟପୁର ମହାରାଜା ବିକ୍ରମଦେବ ବର୍ମା, ପାରଳା ମହାରାଜା କୃଷ୍ଣଚନ୍ଦ୍ର ନାରାୟଣ ଦେବ, ପାଟଣା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହ ଦେଓ ଏବଂ ବୌଦରାଜା ନାରାୟଣ ପ୍ରସାଦ ଦେବଙ୍କ ନାମରେ ଗ୍ରନ୍ଥର ବିଭିନ୍ନ ଖଣ୍ଡ ଉତ୍ସର୍ଗ କରିଥିବାରୁ କଂଗ୍ରେସ ଲୋକେ ତାଙ୍କର ତୀବ୍ର ସମାଲୋଚନା କରିଥିଲେ; ମାତ୍ର ସେ ସମୟରେ ଉଚ୍ଚ ଇଂରେଜ କର୍ତ୍ତୃପକ୍ଷ ଏବଂ ରାଜା ଜମିଦାରମାନଙ୍କର ପୃଷ୍ଠପୋଷକତା ଓ ସାହାଯ୍ୟ ଲାଭ କରିପାରି ନ ଥିଲେ, ଭାଷାକୋଷର ସଂକଳନ ଏବଂ ମୁଦ୍ରଣ ସମ୍ଭବ ହୋଇ ପାରି ନ ଥାନ୍ତା । ଅନ୍ୟ ଦିଗରେ ଭାଷାକୋଷରେ ଅଶ୍ଳୀଳ ଶବ୍ଦମାନ ସଂକଳନ ହେତୁ ଗୋଦାବରୀଶ ମହାପାତ୍ର ଏବଂ ଶରତ୍ ମୁଖର୍ଜୀ ପ୍ରଭୃତି ସାହିତ୍ୟିକ ମଧ୍ୟ ତାଙ୍କୁ ତୀବ୍ର ସମାଲୋଚନା କରିଥିଲେ । ମାତ୍ର ଅଶ୍ଳୀଳ ଶବ୍ଦଗୁଡ଼ିକର ସଂଯୋଜନା ଓ ବ୍ୟାଖ୍ୟା ଅଭିଧାନରେ ରହିବା ଦୋଷାବହ ନୁହେଁ ।

ଏସବୁ ସାମାନ୍ୟ ସମାଲୋଚନା ସତ୍ତ୍ୱେ, ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ଯେ ପ୍ରହରାଜଙ୍କର ଓଡ଼ିଆ ଭାଷା ଓ ଜାତିକୁ ବିରାଟ ଅବଦାନ, ଏହା ଆଜିପର୍ଯ୍ୟନ୍ତ ଦେଶର ସମସ୍ତ ସାହିତ୍ୟିକ ଏବଂ ଓଡ଼ିଶାର ଜନସାଧାରଣ ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି । ଏପରି ବିରାଟ ଅଭିଜ୍ଞାନ ଗ୍ରନ୍ଥ ଓଡ଼ିଆଭାଷାରେ ପୂର୍ବରୁ ପ୍ରଣୀତ ହୋଇ ନ ଥିଲା କିମ୍ବା ଆଜିଯାଏଁ ହୋଇନାହିଁ । ଏ ଭାଷାକୋଷ ଫର୍ଗୁସନ୍‌ଙ୍କର ହିନ୍ଦୁସ୍ଥାନୀ ଇଂରାଜୀ ଅଭିଧାନ, ଓଏବ୍‌ଷ୍ଟର ଇଂରାଜୀ ଡିକ୍ସନାରୀ, ଅକ୍ସଫୋର୍ଡ଼ ଇଂରାଜୀ ଡିକ୍ସନାରୀ ସହିତ ତୁଳନୀୟ । ବିଭିନ୍ନ ଭାରତୀୟ ଭାଷାରେ ସଂକଳିତ ଅଭିଧାନଗୁଡ଼ିକ ମଧ୍ୟରେ ଏ ଭାଷାକୋଷର ସ୍ଥାନ ଅତି ଉଚ୍ଚରେ ।

ବଙ୍ଗଳା ଭାଷାତତ୍ତ୍ୱବିଦ୍ ସୁନୀତି କୁମାର ଚାଟର୍ଜୀ ଏବଂ କବିଗୁରୁ ରବୀନ୍ଦ୍ରନାଥ ଠାକୁର ମଧ୍ୟ ଏ ଭାଷାକୋଷର ଉଚ୍ଚ ମାନ ଓ ଉପକାରିତାର ଉଚ୍ଚ ପ୍ରଶଂସା କରିଥିଲେ । ଏ ଭାଷାକୋଷ ରଚନାଦ୍ୱାରା ପ୍ରହରାଜ ଓଡ଼ିଆଭାଷାର ମହାନତା, ପ୍ରାଚୀନତା, ଶବ୍ଦବହୁଳତା, ଭାବ ଓ ଧ୍ୱନି ପ୍ରକାଶକ୍ଷମତା ସମଗ୍ର ସଭ୍ୟଜଗତ୍‌ର ବିଦ୍ୱଜ୍ଜନମଣ୍ଡଳୀକୁ ଅବଗତ କରାଇବାପାଇଁ ସମର୍ଥ ହୋଇଥିଲେ ।

ଏ ଗ୍ରନ୍ଥ ପ୍ରଣୟନ ହେତୁ ପ୍ରହରାଜ ବ୍ରିଟିଶ ସରକାର, ବିଭିନ୍ନ ଶିକ୍ଷା ଓ ଅନ୍ୟ ଅନୁଷ୍ଠାନମାନଙ୍କରୁ ବହୁ ସମ୍ମାନ ପାଇଥିଲେ । ୧୯୩୩ ମସିହାରେ ବ୍ରିଟିଶ ସରକାର ତାଙ୍କୁ କୈସର-ଇ-ହିନ୍ଦ୍ ଏବଂ ୧୯୩୭ ମସିହାରେ ରାୟବାହାଦୂର ପଦବୀମାନ ଦେଇଥିଲେ । ଆନ୍ଧ୍ର ଭାରତୀ ତୀର୍ଥ ବିଶ୍ୱବିଦ୍ୟାଳୟ ତାଙ୍କୁ ପ୍ରଥମେ 'ସାହିତ୍ୟବିଶାରଦ' ଏବଂ ପରେ 'ସାହିତ୍ୟ-ଭୂଷଣ' ଉପାଧି ଦେଇଥିଲେ । ୧୯୩୭ ମସିହାରେ କଟକ ମ୍ୟୁନିସିପାଲିଟି ନର୍ମାଲ୍‌ସ୍କୁଲ୍ ଲେନ୍‌କୁ 'ଭାଷାକୋଷ ଲେନ୍' ନାମରେ ନାମିତ କରିଥିଲେ । ଭାରତବର୍ଷର ବିଭିନ୍ନ ରାଜ୍ୟ ବ୍ୟତୀତ ଭାରତ ବାହାରେ ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ, ନରୱେ ପ୍ରଭୃତି ଦେଶରେ ମଧ୍ୟ ଭାଷାକୋଷର ଗ୍ରାହକ ଥିଲେ । ନରସିଂହ ମହାପାତ୍ର, ଯେ କି ପ୍ରହରାଜଙ୍କ ଜୀବିତାବସ୍ଥାରେ ଭାଷାକୋଷ ସଂସ୍ଥାରେ କାର୍ଯ୍ୟ କରୁଥିଲେ, ଲେଖିଛନ୍ତି ଯେ, ୧୨୦୦୦ ସେଟ୍ ମୁଦ୍ରିତ ଭାଷାକୋଷରୁ ବିଭିନ୍ନ ଅନୁଷ୍ଠାନ ଓ ବ୍ୟକ୍ତିବିଶେଷଙ୍କୁ ବିକ୍ରି ପରେ ଅବଶିଷ୍ଟ ସେଟ୍‌ଗୁଡ଼ିକୁ ରିହାତି ମୂଲ୍ୟରେ ବିକ୍ରୟ କରିବାକୁ ପ୍ରହରାଜ କଥାବାର୍ତ୍ତା କରିଥିଲେ । ମାତ୍ର ତାଙ୍କ ମୃତ୍ୟୁ ପରେ କେତେକ ଲୋକ ବହୁ ସେଟ୍ ବହି ଭାଷାକୋଷ ଆଶ୍ରମରୁ ଚୋରିକରି ନେଇଯାଇଥିଲେ । ବହୁ ଅଜ୍ଞ ଲୋକ ତାକୁ ଠୁଙ୍ଗା ଆକାରରେ ଅପବ୍ୟବହାର କରିଥିଲେ ।

ଭାଷାକୋଷ ପ୍ରଣୟନ ପାଇଁ ବହୁ ସନ୍ଥ, ରାଜା, ମହାରାଜା, ଜମିଦାର, ବ୍ରିଟିଶ ସରକାରଙ୍କର-କଲେକ୍ଟର, କମିସନର, ଶିକ୍ଷା ବିଭାଗର କର୍ମକର୍ତ୍ତା, ଗଭର୍ଣ୍ଣର ଏବଂ ବଡ଼ଲାଟଙ୍କ ସମେତ ବହୁ ସାହିତ୍ୟିକ, କବି, ଲେଖକ ଓ ବୁଦ୍ଧିଜୀବୀ ତାଙ୍କୁ ଉତ୍ସାହ ଓ ସାହାଯ୍ୟ ପ୍ରଦାନ କରିଥିଲେ । ପ୍ରହରାଜ ତାଙ୍କ ଜୀବନର ଶ୍ରେଷ୍ଠ ସମୟ ସତେଇଶ ବର୍ଷ, ତାଙ୍କର ସମ୍ପତ୍ତି ଏବଂ ସଞ୍ଚିତ ଅର୍ଥ ଭାଷାକୋଷ ପ୍ରଣୟନରେ ବିନିଯୋଗ କରିଥିଲେ ଏବଂ ଭାଷାକୋଷ ପାଇଁ ସେ ତାଙ୍କର ସମ୍ପତ୍ତିବାଡ଼ି ବନ୍ଧାପକାଇ ନିଃସ୍ୱ ହୋଇଯାଇଥିଲେ । ତାଙ୍କର ତ୍ୟାଗ, ନିଷ୍ଠା ଓ ପରିଶ୍ରମ ବ୍ୟର୍ଥ ହୋଇଯାଇନାହିଁ । ତାର ବିନିମୟରେ ସେ ଓଡ଼ିଆ ଜାତି ପାଇଁ ଓଡ଼ିଆ ଭାଷାରେ କୋଣାର୍କ ପରି କୀର୍ତ୍ତି ଗଢ଼ିଦେଇଯାଇଛନ୍ତି ।

## ପାରିବାରିକ ଜୀବନ ଓ ଶେଷ ଜୀବନ –

ପ୍ରହରାଜଙ୍କର ପାରିବାରିକ ଜୀବନ ସୁଖମୟ ନ ଥିଲା । ତାଙ୍କର ଶେଷଜୀବନ ମଧ୍ୟ ଅତ୍ୟନ୍ତ ଦୁଃଖମୟ ଥିଲା ଏବଂ ଅତୀବ ଦୁଃଖଦାୟକ ପରିସ୍ଥିତିରେ ତାଙ୍କ ଜୀବନର ଅବସାନ ହୋଇଥିଲା । ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ପରି ଅବଦାନ ଓଡ଼ିଆଜାତିକୁ ଦେବା ପାଇଁ ସେ ତାଙ୍କ ଜୀବନର ଶ୍ରେଷ୍ଠ ସମୟରେ ବହୁ ଅଧ୍ୟବସାୟ କରିଥିଲେ, ବହୁ ଦୁଃଖକଷ୍ଟ ସହିଥିଲେ, ବହୁ ଲୋକଙ୍କର ଦ୍ୱାରସ୍ଥ ହୋଇ ଅର୍ଥ ସଂଗ୍ରହ କରିଥିଲେ । ନିଜର ରୋଜଗାର

ପନ୍ଥା ତ୍ୟାଗକରି ଓ ସଂଚୟ ଶେଷକରି ଋଣଗ୍ରସ୍ତ ହୋଇଥିଲେ ଏବଂ ନିଜ ପାରିବାରିକ ଜୀବନର ଶାନ୍ତିସୁଖକୁ ଜଳାଞ୍ଜଳି ଦେଇଥିଲେ । ଭାଷାକୋଷର ସଂକଳନ ଓ ପ୍ରକାଶନର ପରିସମାପ୍ତିର ମାତ୍ର ପାଞ୍ଚବର୍ଷ ପରେ ଅତି ଦୁଃଖଦାୟକ ଓ ଅଶାନ୍ତ ପରିବେଶ ମଧ୍ୟରେ ତାଙ୍କ ଜୀବନ ଶେଷହୋଇଥିଲା । ତାଙ୍କର ଅଶାନ୍ତ ପାରିବାରିକ ପରିବେଶ ଏବଂ ଦୁଃଖମୟ ଶେଷ ଜୀବନ ଓ ବିୟୋଗ ପାଇଁ ତାଙ୍କ ପରିବାରର ପରିସ୍ଥିତି ଏବଂ ନିଜର କାର୍ଯ୍ୟ ବହୁ ପରିମାଣରେ ଦାୟୀ । ଭାଷାକୋଷ ସଂକଳନ ପାଇଁ ସେ ଯେଉଁ ଦୃଢସଂକଳ୍ପ ଓ ଅଧ୍ୟବସାୟ କରିଥିଲେ ଏବଂ ଯେଉଁ ନିଷ୍ଠା, ଏକାଗ୍ରତା ଓ ମନୋବଳ ଦେଖାଇଥିଲେ, ତାହାର ଏକ-ଶତାଂଶ ମଧ୍ୟ ପ୍ରଚଳିତ ନୀତି-ନିୟମ ଅନୁସାରେ ସଂଯମ ସହ ନିଜର ଜୀବନଯାପନ ପ୍ରଣାଳୀ ସଂଶୋଧନ କରିବା, ପାରିବାରିକ ଜୀବନକୁ ସଜାଡ଼ି ପରିବାରେ ସ୍ତ୍ରୀ, ପୁତ୍ରକନ୍ୟା ଏବଂ ଅନ୍ୟ ସଦସ୍ୟମାନଙ୍କ ମଧ୍ୟରେ ସ୍ନେହ, ଶ୍ରଦ୍ଧା ଏବଂ ଶାନ୍ତି ସ୍ଥାପନ କରିବାରେ ଦେଖାଇନାହାନ୍ତି । ଏହା ଏକ ବିସ୍ମୟକର କଥା ଯେ, କେବଳ ଆମ ସମାଜରେ ନୁହେଁ, ପୃଥିବୀର ବହୁ ଦେଶରେ ବିଭିନ୍ନ ଯୁଗରେ ସର୍ବସାଧାରଣ କ୍ଷେତ୍ରରେ ବିରାଟ କାର୍ଯ୍ୟ ଓ ଅବଦାନଯୋଗୁଁ ଯଶ ଓ ଖ୍ୟାତି ଅର୍ଜନ କରିଥିବା ବହୁ ପ୍ରତିଷ୍ଠିତ ଲୋକଙ୍କର ନିଜର ବ୍ୟକ୍ତିଗତ ଓ ପାରିବାରିକ ଜୀବନରେ ବିଷମ ବିଭ୍ରାଟ ଘଟିଛି ।

ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପିତା ଜମିଦାର ନରସିଂହ ପ୍ରହରାଜଙ୍କର ସତରଗୋଟି ସନ୍ତାନ ଥିଲେ । ସେମାନେ ସମସ୍ତେ ଗୋଟିଏ ମା'ର ସନ୍ତାନ ହୋଇନଥିବେ; କାରଣ ତାଙ୍କର ନିଜ ମା' ତାଙ୍କୁ ଏଗାର ବର୍ଷ ବୟସ ହୋଇଥିବା ସମୟରେ ମରିଯାଇଥିଲେ । ପିତାଙ୍କ ମୃତ୍ୟୁବେଳକୁ ତାଙ୍କର ସାତପୁଅ ଏବଂ ଆଠ ଝିଅ ବଞ୍ଚିଥିଲେ । ସୁତରାଂ ପିତାଙ୍କ ମୃତ୍ୟୁ ପରେ ଏହି ବିରାଟ ପରିବାରରେ ଭାଇ ଭାଇ ମଧରେ କଳହ ଓ ସମ୍ପତ୍ତିବଣ୍ଟନ ଅନିବାର୍ଯ୍ୟ ଥିଲା । ନରସିଂହ ପ୍ରହରାଜଙ୍କର ୧୯୧୪ ମସିହାରେ ମୃତ୍ୟୁ ପରେ ୧୯୧୫ ମସିହାରେ ଭାଇମାନେ ଅଲଗା ହୋଇଯାଇଥିଲେ । ଗୋପାଳ ପ୍ରହରାଜ ତାଙ୍କର ପୁରୁଣା ଘର ଅନ୍ୟ ଭାଇମାନଙ୍କୁ ଦେଇ ଗାଁର ପଶ୍ଚିମ ମୁଣ୍ଡରେ ନିଜର ଗୋଟିଏ ପକ୍କାଘର ନିର୍ମାଣ କରି ସେଥିରେ ରହିଥିଲେ । ଜମିଦାରି ଓ ଘରର ସମ୍ପତ୍ତିପତ୍ର ବଣ୍ଟାବଣ୍ଟି ଓ ପରିଚାଳନା ପ୍ରଭୃତି ବିଷୟରେ ଭାଇମାନଙ୍କ ସହିତ ତାଙ୍କର ଶାନ୍ତିପୂର୍ଣ୍ଣ ସ୍ନେହଶ୍ରଦ୍ଧାର ସମ୍ପର୍କ ନ ଥିଲା । ଭାଷାକୋଷ କାର୍ଯ୍ୟରେ ନିଜକୁ ସଂପୂର୍ଣ୍ଣ ନିୟୋଜିତ କରିବା ପୂର୍ବରୁ ନିଜ ଭାଗରେ ପଡ଼ିଥିବା ଜମିଦାରି ଓ ସମ୍ପତ୍ତିର ପରିଚାଳନା କରିବାକୁ ସେ ବରାବର ଗାଁକୁ ଯାଉଥିଲେ । ସମ୍ପତ୍ତିରକ୍ଷାପାଇଁ କଳହ କିମ୍ବା ମାଲିମକଦ୍ଦମା ପ୍ରଭୃତି କରିବାର ଊର୍ଦ୍ଧ୍ୱରେ ସେ ନ ଥିଲେ । ତାଙ୍କର ପ୍ରଧାନ ବୃତ୍ତି ଓକିଲାତି ମଧ ଏସବୁ ବିଷୟରେ ତାଙ୍କୁ ଉଦାରମନା ହେବାକୁ ସୁଯୋଗ ଦେଉନଥିଲା । ଗୋଳିଆପାଣିର ଓଧ ପରି ସେ ଏପରି ପରିବେଶରେ ରହୁଥିଲେ ବୋଲି ନିଜେ କହୁଥିଲେ ।

ତାଙ୍କର ବ୍ୟକ୍ତିଗତ ଯୌନ-ଜୀବନ ମଧ ସମାଜର ବହୁଲୋକଙ୍କ ଦୃଷ୍ଟିରେ କଳୁଷିତ ଥିଲା । କଲେଜରେ ପଢୁଥିବା ସମୟରେ ଅଠରବର୍ଷ ବୟସରେ ସେ ପୁରୀ ବିଶ୍ୱନାଥପୁର ନୂଆଗାଁ ଶାସନରେ ମୁକ୍ତାମଣିଙ୍କୁ ବିବାହ କରିଥିଲେ । ସେତେବେଳେ ମୁକ୍ତାମଣିଙ୍କୁ ମୋଟେ

ଆଠବର୍ଷ ବୟସ ହୋଇଥିଲା । ଓଡ଼ିଶାର ବ୍ରାହ୍ମଣସମାଜରେ ସେତେବେଳେ ବାଲ୍ୟବିବାହ ବିଧିବଦ୍ଧ ପ୍ରଚଳିତ ରୀତି ଥିଲା । ମୁକ୍ତାମଣିଙ୍କ ପରିବାରର ଅବସ୍ଥା ସ୍ୱଚ୍ଛଳ ନ ଥିବାରୁ ବିବାହ ପରେ ମୁକ୍ତାମଣି ପ୍ରହରାଜଙ୍କ ଘରେ ରହୁଥିଲେ; ମାତ୍ର ସେ ଘରଯୋଗ୍ୟା ହୋଇନଥିବାରୁ ପ୍ରହରାଜଙ୍କ ସହିତ ତାଙ୍କର ମୋଟେ ସାକ୍ଷାତ ହୋଇନଥିଲା । ପ୍ରହରାଜଙ୍କର ପିତାମାତାଙ୍କର ଏ ବିଷୟରେ ଦୃଢ଼ କଟକଣା ଥିଲା । ପ୍ରହରାଜ କଲିକତା ବିଶ୍ୱବିଦ୍ୟାଳୟରୁ ଏଣ୍ଟ୍ରାନ୍‌ସ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ୍ କରିଥିଲେ ଏବଂ ପରୀକ୍ଷାରେ ଓଡ଼ିଶାରେ ତୃତୀୟ ସ୍ଥାନ ଅଧିକାର କରି ଡିଭିଜନାଲ ସ୍କଲାରସିପ୍ ପାଇଥିଲେ । ମାତ୍ର କଲେଜରେ ପ୍ରଥମବାର୍ଷିକ ଶ୍ରେଣୀରେ ପଢ଼ିବା ସମୟରେ ତାଙ୍କର ଚାରିତ୍ରିକ ସ୍ଖଳନ ହୋଇଥିଲା । ସେ ନିଶାସେବନ ଓ ବେଶ୍ୟାସଙ୍ଗ ପ୍ରଭୃତି କୁକର୍ମରେ ପ୍ରବୃତ୍ତ ହେଲେ । ଫଳରେ ତାଙ୍କର ପଢ଼ାପଢ଼ିରେ ବିଶେଷ ବ୍ୟାଘାତ ହେଲା ଏବଂ ତାଙ୍କ ଶରୀରରେ ଉପଦଂଶ ପ୍ରଭୃତି ରୋଗ ମଧ୍ୟ ହେଲା । କଲେଜର ପ୍ରଥମ ବାର୍ଷିକ ପରୀକ୍ଷାରେ ସେ ଅକୃତକାର୍ଯ୍ୟ ହେଲେ ।

ତାଙ୍କର ପିତା ଏକଥା ଜାଣି ଅତ୍ୟନ୍ତ ମର୍ମାହତ ହେଲେ ଏବଂ ପିତାଙ୍କ ତାଡ଼ନାରେ ତାଙ୍କର ଜୀବନଯାପନ ପ୍ରଣାଳୀରେ ପରିବର୍ତ୍ତନ ଆସିଲା । ସେ ପୁଣି ପାଠପଢ଼ାରେ ମନ ଦେଇ ଏଫ୍.ଏ. ପରୀକ୍ଷା ପ୍ରଥମ ଶ୍ରେଣୀରେ ପାସ୍ କରିଥିଲେ ଏବଂ ପରେ ବି.ଏ.ବି.ଏଲ୍. ପରୀକ୍ଷା ଯଥାସମୟରେ ପାସ୍ କରିଥିଲେ । ମାତ୍ର ପ୍ରଥମ କଲେଜ-ଜୀବନର ଯୌନ ଅସଂଯମତା ଚିରଦିନ ପାଇଁ ବଦଳିଯାଇନଥିଲା, ଏହାର କେବଳ ସାମୟିକ ପରିବର୍ତ୍ତନ ଘଟିଥିଲା । ବୈବାହିକ ଜୀବନରେ ପ୍ରୌଢ଼ ଓ ବାର୍ଦ୍ଧକ୍ୟ ଅବସ୍ଥାରେ ତାଙ୍କର ନିଜ ଶାଳୀ ପୀତାମ୍ବରୀ ଦେବୀଙ୍କ ସହିତ ଅନୈତିକ ଓ ସମାଜଗର୍ହିତ ଯୌନ ସମ୍ପର୍କ ହୋଇଥିଲା । ସେଥିଯୋଗୁଁ ସେ ସମାଜର ବହୁଲୋକଙ୍କଦ୍ୱାରା ନିନ୍ଦିତ ହୋଇଥିଲେ ଏବଂ ତାଙ୍କ ପରିବାରରେ ସ୍ତ୍ରୀ ଓ ପୁତ୍ରଙ୍କ ସହିତ ବହୁ କଳହ ଓ ମାଲିମକଦ୍ଦମା ହୋଇଥିଲା । ଶେଷ ଜୀବନରେ ତାଙ୍କର ପତ୍ନୀ ମୁକ୍ତାମଣି ଦେବୀ ତାଙ୍କଠାରୁ ବିଚ୍ଛିନ୍ନ ହୋଇ ତାଙ୍କ ଗାଁରେ ରହୁଥିଲେ । ସେହିଠାରେ ହିଁ କୌଣସି ଅଜ୍ଞାତ ବ୍ୟକ୍ତି ତାଙ୍କୁ ତଣ୍ଟିଚିପି ହତ୍ୟାକରିଥିଲା । ପ୍ରହରାଜ ପୀତାମ୍ବରୀ ଦେବୀଙ୍କ ସଙ୍ଗ ଛାଡ଼ିପାରିନଥିଲେ । ଶେଷରେ ଜଣେ ଅଜ୍ଞାତ ବ୍ୟକ୍ତି ପ୍ରହରାଜଙ୍କୁ ମଧ୍ୟ ବିଷ ପ୍ରୟୋଗ କରି ହତ୍ୟାକରିଥିଲା । ବହୁ ଲୋକ ସନ୍ଦେହ କରୁଥିଲେ ଯେ, ପୀତାମ୍ବରୀ ଦେବୀ ଏ ସବୁ ହତ୍ୟାକାଣ୍ଡରେ ଜଡ଼ିତ ଥିଲେ; ମାତ୍ର ସେକଥା କଚେରିରେ ପ୍ରମାଣିତ ହୋଇ ପାରି ନ ଥିଲା ।

ପୀତାମ୍ବରୀ ଦେବୀ ମୁକ୍ତାମଣିଙ୍କର ସାନଭଉଣୀ ଥିଲେ ଏବଂ ମୁକ୍ତାମଣିଙ୍କଠାରୁ ସେ ୨୧ ବର୍ଷ ସାନ ଥିଲେ । ପ୍ରହରାଜଙ୍କଠାରୁ ବୟସରେ ସେ ୩୧ ବର୍ଷ ସାନ ଥିଲେ ଏବଂ ମୁକ୍ତାମଣିଙ୍କ ବିବାହର ୧୩ ବର୍ଷ ପରେ ୧୯୦୫ ମସିହାରେ ଜନ୍ମ ହୋଇଥିଲେ । ସେ ସାକ୍ଷୀଗୋପାଳର ସନ୍ନିକଟ ଗାଁରେ ବାଲ୍ୟବିବାହ କରିଥିଲେ । କିନ୍ତୁ ଦୁର୍ଯୋଗକ୍ରମେ ବାରବର୍ଷ ବୟସରେ ସେ ବିଧବା ହୋଇଥିଲେ । ବାପଘର ଏବଂ ଶାଶୁଘରର ଆର୍ଥିକ ଅବସ୍ଥା ଅସଚ୍ଛଳଥିବାରୁ, ଅଧିକାଂଶ ସମୟ ସେ ପ୍ରହରାଜଙ୍କର ଗାଁ ଓ କଟକ ଘରେ ରହୁଥିଲେ । ପ୍ରହରାଜ ମକଦ୍ଦମା କରି ପୀତାମ୍ବରୀଙ୍କୁ ତାଙ୍କ ଶାଶୁଘର ସମ୍ପତ୍ତିର ଅଧିକାରିଣୀ କରାଇଥିଲେ

ଏବଂ ସେ ନିଜେ ବିଧବାର ତତ୍ତ୍ୱାବଧାରକରୂପେ ନିଯୁକ୍ତି ପାଇଥିଲେ । ପ୍ରହରାଜ ମଧ ପୀତାମ୍ବରୀଙ୍କ ପାଇଁ ତାଙ୍କ ଘର ଡିହ ଉପରେ ଗୋଟିଏ କୋଠାଘର ନିର୍ମାଣ କରାଇଥିଲେ । ଲୋକମାନେ ସେ ସମୟରେ ବିଶ୍ୱାସ କରୁଥିଲେ ଯେ, ସେ ଘର ତିଆରି ପାଇଁ ପ୍ରହରାଜ ନିଜ ହାତରୁ ଅନେକ ପଇସା ଖର୍ଚ୍ଚକରିଥିଲେ । ଭାଷାକୋଷ ପାଇଁ ଶବ୍ଦସଂଗ୍ରହ ଏବଂ ସଂମାର୍ଜନ କାର୍ଯ୍ୟରେ ପ୍ରହରାଜ ପୀତାମ୍ବରୀ ଦେବୀଙ୍କର ସାହାଯ୍ୟ ନେଉଥିଲେ । ସେ ସମୟରେ ପୀତାମ୍ବରୀ ଦେବୀ ପ୍ରହରାଜଙ୍କ କଟକ ଘରେ ରହୁଥିଲେ । କ୍ରମେ ପ୍ରହରାଜ ଓ ପୀତାମ୍ବରୀଙ୍କ ମଧ୍ୟରେ ଭିନ୍ନ ସମ୍ପର୍କ ହେଲା । ପ୍ରହରାଜ ଭାଷାକୋଷ କାର୍ଯ୍ୟରେ ବ୍ୟସ୍ତ ଥିବା ହେତୁ ନିଜ ଘର ସମ୍ପତ୍ତି ଓ ଜମିଦାରି ବିଷୟ ବୁଝିପାରୁ ନ ଥିଲେ ଏବଂ ମୁକ୍ତାମଣି ଅଧିକାଂଶ ସମୟ ତାଙ୍କ ପିଲାମାନଙ୍କ ସହିତ ଗ୍ରାମରେ ରହି ଗ୍ରାମ ସମ୍ପତ୍ତିବାଡ଼ିର ସମସ୍ତ ଖବର ବୁଝୁଥିଲେ ।

ପ୍ରହରାଜ ଓ ପୀତାମ୍ବରୀଙ୍କ ଅସାମାଜିକ ସମ୍ପର୍କ ବିଷୟରେ ଲୋକମାନେ ଅପବାଦ କଲେ । ପ୍ରଥମେ ମୁକ୍ତାମଣି ସେ କଥା ବିଶ୍ୱାସ କରୁନଥିଲେ; କାରଣ ପୀତାମ୍ବରୀ ପ୍ରହରାଜ ଦମ୍ପତିଙ୍କର କନ୍ୟାସ୍ୱରୂପିଣୀ ଥିଲେ । ସେ ପ୍ରହରାଜଙ୍କ ପୁଅଠାରୁ ମଧ ପାଞ୍ଚବର୍ଷ ସାନ ଥିଲେ । ମାତ୍ର ପରେ ମୁକ୍ତାମଣି ସବୁକଥା ଜାଣିପାରିଲେ । ବିଶେଷତଃ ଢଗଢ଼ମାଳି ବଚନର ପ୍ରକାଶନରେ ପୀତାମ୍ବରୀ ଦେବୀ ପ୍ରହରାଜଙ୍କ ସହଯୋଗୀ ହେଲେ ଏବଂ ଭାଷାକୋଷ ପ୍ରସ୍ତୁତିରେ ସହାୟିକା ଭାବରେ ସେ ପ୍ରହରାଜଙ୍କ କଟକ ଘରେ ରହିଲେ । ଲୋକେ କହନ୍ତି ଯେ,ଏବିଷୟରେ କଳହ କରି ମୁକ୍ତାମଣି କଟକ ଘର ଛାଡ଼ି ଗାଁକୁ ଚାଲିଗଲେ ଏବଂ ତାଙ୍କ ପୁଅ ସହିତ ମିଶି ଗାଁର ସମ୍ପତ୍ତିବାଡ଼ିର ସମସ୍ତ ତତ୍ତ୍ୱ ନେଲେ । ପ୍ରହରାଜଙ୍କ ସହିତ ତାଙ୍କର ସମ୍ପର୍କ କ୍ରମେ ତୁଟିଗଲା । ସ୍ୱାମୀ ସ୍ତ୍ରୀ କେହି କାହାରି ମୁହଁ ଚାହିଁବାକୁ ସୁଦ୍ଧା ପ୍ରସ୍ତୁତ ନ ଥିଲେ । ପ୍ରହରାଜ କଟକଘରେ ପୀତାମ୍ବରୀଙ୍କ ସହିତ ସ୍ୱାମୀ ସ୍ତ୍ରୀ ପରି ରହିଲେ ଏବଂ ଦିନରାତି ଭାଷାକୋଷ ସଂକଳନ ଏବଂ ସାହିତ୍ୟସେବା କାର୍ଯ୍ୟରେ ବ୍ୟାପୃତ ହେଲେ । ପୀତାମ୍ବରୀ ଦେବୀ ପ୍ରହରାଜଙ୍କ ଦୈନନ୍ଦିନ ସେବାର ସମସ୍ତ ଦାୟିତ୍ୱ ନେଲେ । ଲୋକମାନେ ଏସବୁ କଥା ଜାଣି ପ୍ରହରାଜଙ୍କର ନିନ୍ଦାକଲେ ଏବଂ ଚାରିଆଡ଼େ ତାଙ୍କର ବହୁ ଅପବାଦ ହେଲା; ମାତ୍ର ପ୍ରହରାଜ ସେଥିପ୍ରତି ଉଦାସୀନ ରହିଲେ ।

ପ୍ରହରାଜ ପୀତାମ୍ବରୀଙ୍କ ସହିତ ସାମାଜିକ ଉତ୍ସବ ପ୍ରଭୃତିରେ ଯୋଗଦେଲେ । ପୀତାମ୍ବରୀ ସଙ୍ଗୀତଶିକ୍ଷାକଲେ ଏବଂ ପ୍ରହରାଜଙ୍କ ସହାୟତାରେ ଜଣେ ସାହିତ୍ୟିକା ହେଲେ । ଉତ୍କଳ ସାହିତ୍ୟରେ ତାଙ୍କ ନାମରେ 'କାନ୍ତରାବାବୁ' ଉପନ୍ୟାସର ବିଜ୍ଞାପନ ଦେଲେ । 'ବାଇଦାସଙ୍କ ଭଜନ' ବହିରେ ପୀତାମ୍ବରୀ ଦେବୀଙ୍କ ନାମରେ ୨୦ ଗୋଟି ଭଜନ ପ୍ରକାଶିତ ହୋଇଥିଲା । 'ବାଇନାନୀଙ୍କ ବୃକ୍ଳି' ବହିରେ ପୀତାମ୍ବରୀ ଦେବୀହିଁ ବାଇନାନୀ ଥିଲେ । ଭାଷାକୋଷ ଆଶ୍ରମରେ ପୀତାମ୍ବରୀ ଦେବୀ କର୍ତ୍ରୀ ହୋଇଗଲେ ଏବଂ ପ୍ରହରାଜଙ୍କ ଦୈନନ୍ଦିନ ଜୀବନରେ ତାଙ୍କର ସେବା ଅପରିହାର୍ଯ୍ୟ ହେଲା । ପ୍ରତିଦିନ ରାତି ତିନିଟାରୁ ଉଠି ଉଭୟେ ପ୍ରାର୍ଥନା ଏବଂ ଭଜନ ଗାନକରୁଥିଲେ ଏବଂ ଦିନଯାକ ଭାଷାକୋଷ କାମରେ କଟାଉଥିଲେ ।

ପ୍ରହରାଜଙ୍କର ଖାଇବା, ପିଇବା, ବିଶ୍ରାମ କରିବା ପ୍ରଭୃତି ସମସ୍ତ ସେବାକାର୍ଯ୍ୟ ପୀତାମ୍ବରୀ ଦେବୀ ବୁଝୁଥିଲେ ଏବଂ ସେ ତାଙ୍କର ସମସ୍ତ କାର୍ଯ୍ୟରେ ସହକର୍ମିଣୀ ଓ ସହଧର୍ମିଣୀ ଥିଲେ ।

ମାତ୍ର ସେ ଦୁଇଜଣ ସ୍ୱାମୀ ସ୍ତ୍ରୀ ଭାବରେ ଚଳୁଥିଲେ ମଧ୍ୟ, ପ୍ରହରାଜ ପୀତାମ୍ବରୀଙ୍କୁ ଆନୁଷ୍ଠାନିକ ଭାବରେ ବିବାହ କରିବାକୁ ଇଚ୍ଛା ପ୍ରକାଶ କରୁନଥିଲେ; କାରଣ ପ୍ରହରାଜ ବାଲୁତ ବିଧବା ପୀତାମ୍ବରୀଙ୍କ ସମ୍ପତ୍ତିର ତତ୍ତ୍ୱାବଧାରକ ଥିଲେ । ତାଙ୍କୁ ବିବାହ କରିଥିଲେ ପୀତାମ୍ବରୀ ତାଙ୍କ ଶାଶୁଘର ସମ୍ପତ୍ତିର ସ୍ୱତ୍ୱାଧିକାର ହରାଇଥାନ୍ତେ ।

ପ୍ରହରାଜ ସ୍ୱଉପାର୍ଜିତ ସମ୍ପତ୍ତିରୁ କିଛି ଅଂଶ ପୀତାମ୍ବରୀଙ୍କ ଭରଣପୋଷଣ ନିମିତ୍ତ ଖଞ୍ଜିଦେଇଥିଲେ । ପୀତାମ୍ବରୀଙ୍କ ପାଳିତ ପୁତ୍ର ଜଗବନ୍ଧୁଙ୍କୁ ସେ ପୁତ୍ରରୂପେ ଗ୍ରହଣ କରିଥିଲେ । ପୀତାମ୍ବରୀଙ୍କ ନାମରେ ଥିବା ଘର, ଘରର ସମସ୍ତ ଆସବାବପତ୍ର ବଞ୍ଚିଥିବା ପର୍ଯ୍ୟନ୍ତ ସେ ହିଁ ଭୋଗକରିବେ ଏବଂ ତାଙ୍କ ଜୀବଦ୍ଦଶାରେ କାହାକୁ ବିକ୍ରୟ କରି ନ ଥିଲେ, ପୀତାମ୍ବରୀଙ୍କ ଅନ୍ତେ ପ୍ରହରାଜଙ୍କ ପୌତ୍ର ଉମାକାନ୍ତ ଓ ସତ୍ୟବାଦୀ ଭୋଗକରିବେ ଏବଂ ତାଙ୍କ ଜୀବିତାବସ୍ଥାରେ କେହି ସେ ସମ୍ପତ୍ତିରେ ଦାବି କରିପାରିବେ ନାହିଁ, ନୂଆଗାଁ ବିଶ୍ୱନାଥପୁର ସମ୍ପତ୍ତିରେ ତାଙ୍କ ଉତ୍ତରାଧିକାରୀଙ୍କ ଦାବି ରହିବ ନାହିଁ ବୋଲି ପ୍ରହରାଜ ତାଙ୍କ ଇଚ୍ଛାପତ୍ରରେ ଉଲ୍ଲେଖ କରିଥିଲେ । ତାଙ୍କ ଅନ୍ତେ ଭାଷାକୋଷ ପରିଚାଳନାର ସମସ୍ତ ଦାୟିତ୍ୱ ଇଚ୍ଛାପତ୍ରରେ ସେ ପୀତାମ୍ବରୀ ଦେବୀଙ୍କୁ ଦେଇଥିଲେ । ସେ ଇଚ୍ଛାପତ୍ରରେ ଲେଖିଥିଲେ ଯେ, ଭାଷାକୋଷର ମୁଦ୍ରଣ, ରକ୍ଷଣାବେକ୍ଷଣ, କମିଶନି ଏବଂ ଋଣବାବଦ୍ ସମସ୍ତ ଅର୍ଥ ପରିଶୋଧ ପରେ ଆଉ ଯାହା ଅବଶିଷ୍ଟ ରହିବ, ସେଥିର ଅର୍ଦ୍ଧକରେ ପୀତାମ୍ବରୀ ଦେବୀ ଅଧିକାରିଣୀ ହେବେ; ନିଜ ବାବଦ୍‌କୁ ପ୍ରାପ୍ୟ ଅର୍ଦ୍ଧକରୁ ଏକ ଭାଗ ଉମାକାନ୍ତ, ସତ୍ୟବାଦୀ ଓ ଜଗବନ୍ଧୁଙ୍କ ମଧ୍ୟରେ ସମାନ ଭାବରେ ବାଣ୍ଟିଦିଆଯିବ ଏବଂ ଅନ୍ୟ ଏକ ଭାଗକୁ ଉତ୍କଳ ସାହିତ୍ୟ ପ୍ରେସର ସ୍ୱତ୍ୱାଧିକାରୀ, ଉତ୍କଳ ସାହିତ୍ୟ ସମାଜ ଓ ତାଙ୍କ ସହକର୍ମୀମାନଙ୍କ ମଧ୍ୟରେ ବାଣ୍ଟିଦିଆଯିବ । ପୀତାମ୍ବରୀ ଦେବୀ ଭାଷାକୋଷର ସ୍ୱତ୍ୱାଧିକାରିଣୀ ଏବଂ ତାଙ୍କ ଅନ୍ତେ କିଏ ସ୍ୱତ୍ୱାଧିକାରୀ ହେବ, ତାହା ପୀତାମ୍ବରୀ ଦେବୀ ନିର୍ବାଚନ କରିବେ ବୋଲି ଇଚ୍ଛାପତ୍ରରେ ଉଲ୍ଲେଖ କରାଯାଇଥିଲା ।

ତାଙ୍କ ସମ୍ପତ୍ତିର ଉତ୍ତରାଧିକାର ନିମିତ୍ତ ପ୍ରହରାଜ ୧୯୨୭ ଏବଂ ୧୯୩୧ ମସିହାରେ ଇଚ୍ଛାପତ୍ରମାନ ରେଜେଷ୍ଟ୍ରି କରିଥିଲେ । ସେ ଦୁଇଟିକୁ ପରିବର୍ତ୍ତନ କରି ୧୯୩୬ ମସିହାରେ ସେ ଶେଷ ଇଚ୍ଛାପତ୍ର ରେଜେଷ୍ଟ୍ରି କରିଥିଲେ । ୧୯୨୭ ମସିହା ଜୁଲାଇ ୨୩ ତାରିଖ ଏବଂ ୧୯୩୧ ମସିହା ସେପ୍ଟେମ୍ବର ୧୪ ତାରିଖରେ ରେଜେଷ୍ଟ୍ରି ହୋଇଥିବା ଇଚ୍ଛାପତ୍ରକୁ ପରିବର୍ତ୍ତନ କରି ପ୍ରହରାଜ ୧୯୩୬ ମସିହା ଫେବୃୟାରୀ ମାସ ୨୯ ତାରିଖରେ ତାଙ୍କ ଶେଷ ଇଚ୍ଛାପତ୍ର ରେଜେଷ୍ଟ୍ରି କରିଥିଲେ । ସେଥିରେ ପଣ୍ଡିତ କୁଳମଣି ଦାଶ ଏବଂ ଜଗବନ୍ଧୁ ରଥ ସାକ୍ଷୀ ଥିଲେ । ସ୍ୱହସ୍ତଲିଖିତ ତାଙ୍କର ଏହି ଇଚ୍ଛାପତ୍ରରେ ଉପରୋକ୍ତ ଭାଷାକୋଷ ଏବଂ ପୀତାମ୍ବରୀ ଦେବୀଙ୍କ ସମ୍ପତ୍ତି ବ୍ୟତୀତ ତାଙ୍କ ପୈତୃକ ସମ୍ପତ୍ତି ଏବଂ ନୂଆଗାଁ ବିଶ୍ୱନାଥପୁରଠାରେ ଥିବା ସମ୍ପତ୍ତି ବିଷୟରେ ଉଲ୍ଲେଖ ଥିଲା । ଗ୍ରାମରେ ଥିବା ତାଙ୍କର ପୈତୃକ

ସମ୍ପତ୍ତି ଓ ସ୍ୱୋପାର୍ଜିତ ସମ୍ପତ୍ତି ତାଙ୍କର ଓ୍ୱାରସମାନେ ପାଇବେ ବୋଲି ଇଚ୍ଛାପତ୍ରରେ ଉଲ୍ଲେଖ କରାଯାଇଥିଲା । ନୂଆଗାଁ ବିଶ୍ୱନାଥପୁରରେ ତାଙ୍କ ଶାଶୂ-ଶଶୁର ଭୋଗକରୁଥିବା ସମ୍ପତ୍ତି ଏବଂ ତାଙ୍କ ସ୍ତ୍ରୀଙ୍କ ନାମରେ ଥିବା ସମ୍ପତ୍ତି ଶାଶୂ ଶଶୁର ଭୋଗକରିବେ ଏବଂ ପରେ ତାଙ୍କ ଇଚ୍ଛା ଅନୁସାରେ ଯାହାକୁ ଦେଇପାରିବେ ବୋଲି ଇଚ୍ଛାପତ୍ରରେ ଉଲ୍ଲେଖ ଥିଲା । ଶୁଣାଯାଏ ଯେ, ଏହି ଶେଷ ଇଚ୍ଛାପତ୍ରରେ ୧୯୪୫ ମସିହାରେ ମୃତ୍ୟୁ ପୂର୍ବରୁ ସେ କିଛି ପରିବର୍ତ୍ତନ କରିବାକୁ ଇଚ୍ଛାକରୁଥିଲେ; ମାତ୍ର ତାହା ହୋଇପାରିନଥିଲା ।

୧୯୪୦ ମସିହାରେ ଭାଷାକୋଷ ସଂକଳନ ଓ ମୁଦ୍ରଣ ଶେଷହେଲା । ସେଥିପାଇଁ ସେ ବହୁ ପ୍ରଶଂସା ପାଇଲେ; ମାତ୍ର ତାହା ଆଶାନୁରୂପ ଭାବରେ ବିକ୍ରି ହୋଇପାରୁନଥିଲା । ପ୍ରହରାଜ କ୍ରମେ ବୃଦ୍ଧ ଓ କ୍ଲାନ୍ତ ହୋଇଆସୁଥିଲେ । ପୀତାମ୍ବରୀ ଦେବୀ ସେ ସମୟରେ ଅଧିକାଂଶ ସମୟ ତାଙ୍କଠାରୁ ଦୂରରେ ସାକ୍ଷୀଗୋପାଳରେ କଟାଉଥିଲେ ।

ଅନ୍ୟ ପକ୍ଷରେ ସିଦ୍ଧେଶ୍ୱରପୁରରେ କୋଠାଘର, ପୁଅବୋହୂ, ନାତିମାନଙ୍କ ଗହଣରେ ଥାଇ ମଧ୍ୟ ମୁକ୍ତାମଣି ମାନସିକ ଯନ୍ତ୍ରଣାରୁ ମୁକ୍ତ ନ ଥିଲେ । ସ୍ୱାମୀଙ୍କର ବ୍ୟବହାରରେ ମ୍ରିୟମାଣ ହୋଇ ତାଙ୍କର ମୁହଁ ଚାହିଁବାକୁ ସେ ଘୃଣାକରୁଥିଲେ । ସେ ଶଶୁରଙ୍କ ସମ୍ପତ୍ତି ଘର ଡିହ ଉପରେ ପଡ଼ିରହିଥିଲେ ଏବଂ କଟକର ଘର ପ୍ରଭୃତି ବିଷୟରେ ପ୍ରହରାଜଙ୍କ ବିରୋଧରେ ମକଦମା କରିଥିଲେ । ପ୍ରହରାଜ ମଧ୍ୟ ସ୍ତ୍ରୀଙ୍କ ଉପରେ ଅତ୍ୟନ୍ତ ଅସନ୍ତୁଷ୍ଟ ଥିଲେ ଏବଂ ଏକମାତ୍ର ପୁତ୍ର ଚନ୍ଦ୍ରଶେଖରଙ୍କ ସହିତ ତାଙ୍କର ଭଲ ସମ୍ପର୍କ ନ ଥିଲା । କଟକ ଘରର କିଛି ଅଂଶ ଓ କିଛି ସମ୍ପତ୍ତି ସେ ପୀତାମ୍ବରୀଙ୍କ ନାମରେ କବଲା କରିଦେଇଥିବାରୁ ଚନ୍ଦ୍ରଶେଖର ତାଙ୍କ ନାମରେ ମକଦ୍ଦମା କରିଥିଲେ । ପୀତାମ୍ବରୀ ବାପ-ପୁଅ ଓ ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ବିବାଦର ପ୍ରଧାନ କାରଣ ଥିଲେ । ଏହିପରି ପରିସ୍ଥିତିରେ ୧୯୪୩ ମସିହା ଜୁନ୍ ମାସ ୨୩ ତାରିଖ ଦିନ କୌଣସି ଆତତାୟୀ ଦିନ ଦୁଇପ୍ରହର ସମୟରେ ମୁକ୍ତାମଣିଙ୍କ ତଣ୍ଟି ଚିପି ତାଙ୍କୁ ହତ୍ୟାକରିଥିଲା । କିଏ, କାହାର ପ୍ରରୋଚନାରେ ଏ ଜଘନ୍ୟ ହତ୍ୟାକାଣ୍ଡ କଲା, ତାହା ସଠିକରୂପେ ଜଣାପଡ଼ିଲା ନାହିଁ; ଘଟଣାଟି ଚିରଦିନ ପାଇଁ ରହସ୍ୟାବୃତ ରହିଗଲା । ପ୍ରମାଣ ଅଭାବରୁ କଚେରୀରେ କାହାକୁ ଦଣ୍ଡ ଦେଇ ହେଲା ନାହିଁ । ଘଟଣାର କିଛି ଦିନ ପରେ ପ୍ରହରାଜ କଟକରୁ ଶତାଧିକ ଲୋକ ନେଇ ନିଜେ ତିଆରିକରିଥିବା ଗାଁର କୋଠାଘରଟିକୁ ସଂପୂର୍ଣ୍ଣରୂପେ ଭଙ୍ଗାଇଦେଲେ ଏବଂ ଘରର ଜିନିଷପତ୍ର ସବୁ ନିଲାମ କରାଇଦେଲେ । ଏହି ପ୍ରକ୍ରିୟାରେ ତାଙ୍କ ନିଜର ଅନେକ ମୂଲ୍ୟବାନ୍ ବହି ମଧ ନଷ୍ଟ ହୋଇଯାଇଥିଲା । ଅନେକ ଜିନିଷ ଗାଁଲୋକେ ଲୁଟାଇ କରି ନେଇଯାଇଥିଲେ । ଏହି କାର୍ଯ୍ୟରେ ଲିପ୍ତଥିବାବେଳେ ତାଙ୍କ ମନର ଅବସ୍ଥା ସହଜରେ ଅନୁମେୟ । ଅବିଶ୍ୱାସ, ସନ୍ଦେହ ଓ କ୍ରୋଧରେ ତାଙ୍କ ମନ ଜର୍ଜରିତ ଥିଲା ।

ମୁକ୍ତାମଣିଙ୍କ ହତ୍ୟାପରେ ପ୍ରହରାଜ ଓ ପୀତାମ୍ବରୀଙ୍କ ସମ୍ପର୍କ ତିକ୍ତ ହୋଇଗଲା । ସେମାନେ ପରସ୍ପରକୁ ଅବିଶ୍ୱାସ-ଚକ୍ଷୁରେ ଦେଖିଲେ । ପରିଚର୍ଯ୍ୟା ନିମିତ୍ତ ସେ ପୀତାମ୍ବରୀଙ୍କର ସାହାଯ୍ୟ ଲୋଡୁଥିଲେ; ମାତ୍ର ପୀତାମ୍ବରୀ ସେ ସମୟରେ ଅଧିକାଂଶ ସମୟ

ସାକ୍ଷୀଗୋପାଳରେ ରହୁଥିଲେ । ପୀତାମ୍ବରୀଙ୍କ ଆଖି ଥିଲା ପ୍ରହରାଜଙ୍କ ଅର୍ଥ, ସମ୍ପତ୍ତି ଓ ଭାଷାକୋଷର ସ୍ୱତ୍ୱ ଉପରେ । ୧୯୩୬ ମସିହାର ଇଚ୍ଛାପତ୍ରରେ ସେ ଭାଷାକୋଷର ସ୍ୱତ୍ୱ ପାଇଥିଲେ ବୋଲି ପୀତାମ୍ବରୀ ଜାଣିଥିଲେ; ମାତ୍ର ଅନୁତପ୍ତ ପ୍ରହରାଜ ଇଚ୍ଛାପତ୍ର ବଦଳେଇପାରନ୍ତି ବୋଲି ପୀତାମ୍ବରୀ ସନ୍ଦେହ କରୁଥିଲେ । କଟକର କିଛି ସମ୍ପତ୍ତି ବିକ୍ରୟ କରି ପ୍ରହରାଜ ତୀର୍ଥାଟନରେ ଯିବାପାଇଁ ସ୍ଥିର କରିଥିଲେ । ପୀତାମ୍ବରୀଙ୍କ ପ୍ରତି ସେ ବୀତସ୍ପୃହ ହୋଇଯାଇଥିଲେ । ପୀତାମ୍ବରୀ ମଧ୍ୟ ପ୍ରହରାଜଙ୍କ ଘରର ସବୁ ଚାବି ଓ ସଞ୍ଚିତ ଅର୍ଥ ହସ୍ତଗତ କରିବାକୁ ଉଦ୍ୟମ କରୁଥିଲେ । ସମୟେ ସମୟେ ମଧ୍ୟ ସେମାନଙ୍କର ଉଚ୍ଚସ୍ୱରରେ କଳହ ହେଉଥିଲା । ଏହିପରି ପରିବେଶରେ ୧୯୪୫ ମସିହା ମଇ ମାସ ୧୬ ତାରିଖ ରାତି ପ୍ରାୟ ୯ଟା ସମୟରେ ତାଙ୍କର କ୍ଷୀରପାନ ସମୟରେ ଭାଷାକୋଷ ଆଶ୍ରମର ଲୋକମାନେ ପ୍ରହରାଜଙ୍କ ଚିତ୍କାର ଏବଂ ପୀତାମ୍ବରୀଙ୍କ କାନ୍ଦର ଶବ୍ଦ ଶୁଣିଥିଲେ । ପୋଟାସିୟମ ସାଇନାଇଡ୍ ମିଶ୍ରିତ କ୍ଷୀର ପାନକରି ପ୍ରହରାଜଙ୍କର ମୃତ୍ୟୁ ହୋଇଥିଲା । ତାଙ୍କୁ ସଙ୍ଗେ ସଙ୍ଗେ ଡାକ୍ତରଖାନାକୁ ନିଆଯାଇଥିଲା; ମାତ୍ର ସେତେବେଳକୁ ତାଙ୍କର ମୃତ୍ୟୁ ହୋଇସାରିଥିଲା । ଇତିମଧ୍ୟରେ ତାଙ୍କର ସମସ୍ତ ସଞ୍ଚିତ ଅର୍ଥ ଓ ଟାଙ୍କିପତ୍ର ପୀତାମ୍ବରୀ ଦେବୀ ହାତକରିନେଇଥିଲେ ବୋଲି ଶୁଣାଯାଏ ।

ଭାଷାକୋଷ ସଂସ୍ଥାରେ କାର୍ଯ୍ୟ କରୁଥିବା ନରସିଂହ ମହାପାତ୍ର ତାଙ୍କ 'ଅମର ଚରିତ' ପୁସ୍ତିକାରେ ପ୍ରହରାଜଙ୍କ ମୃତ୍ୟୁ ଦିନର ବିବରଣୀ ଲେଖିଛନ୍ତି । ସେ ଲେଖିଛନ୍ତି ଯେ, ପାରିବାରିକ ଅଶାନ୍ତି ଏବଂ ସମ୍ପତ୍ତି ପାଇଁ ମୁକ୍ତାମଣିଙ୍କ ସହିତ ମକଦ୍ଦମା ଚାଲିଥିବାବେଳେ ମୁକ୍ତାମଣିଙ୍କ ହତ୍ୟା ଘଟଣା ଘଟିଲା । ବହୁ ଲୋକ ଏଥିପାଇଁ ପ୍ରହରାଜଙ୍କୁ ସନ୍ଦେହକଲେ; ମାତ୍ର ସେ ଗିରଫ ହୋଇ ନ ଥିଲେ । କିନ୍ତୁ ସେହିଦିନଠାରୁ ସେ ନିଜକୁ ବିପନ୍ନ ମନେକରୁଥିଲେ । ଭାଷାକୋଷ ମୁଦ୍ରଣ ଶେଷପରେ ସେ ପୁଣି ଓକିଲାତି କଲେ; ମାତ୍ର ମୃତ୍ୟୁ ସମୟକୁ ତାଙ୍କର ବେଶୀ କିଛି ସଞ୍ଚୟ ନ ଥିଲା । ଜୀବନର ଶେଷଭାଗରେ ତୀର୍ଥାଟନ କରି ଗାଁରେ ପିତାଙ୍କ ନାମରେ 'ନରସିଂହାଶ୍ରମ' କରିବା ପାଇଁ ସେ ମନସ୍ଥ କରିଥିଲେ । ସେଥିପାଇଁ କଟକ ବାସଗୃହକୁ ବିକ୍ରି କରିବାକୁ ଇଚ୍ଛା ପ୍ରକାଶ କରିଥିଲେ । ମାତ୍ର ସେ ସମ୍ପତ୍ତି ପୀତାମ୍ବରୀଙ୍କ ନାମରେ ଆଗରୁ ବେନାମୀ ହୋଇଥିଲା । ପୀତାମ୍ବରୀ ଏ ପ୍ରସ୍ତାବରେ ରାଜି ହେଲେ ନାହିଁ; କିନ୍ତୁ ପ୍ରହରାଜ ଏ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବାକୁ ଜିଦ୍ ଧରିଲେ । କଟକ କୋଠା ବିକ୍ରି ପାଇଁ ଗ୍ରାହକ ମଧ୍ୟ ଠିକ୍ ହୋଇଥିଲେ । ତାଙ୍କ ନିଜ ଓ ପତ୍ନୀଙ୍କ ନାମରେ ଥିବା କେତେକ ଭୂସମ୍ପତ୍ତି ବିକ୍ରିପାଇଁ ମଧ୍ୟ ବନ୍ଦୋବସ୍ତ ଚାଲିଥିଲା । ଏହି ବିକ୍ରିଟଙ୍କାରୁ କିଛି ଟଙ୍କା ପୀତାମ୍ବରୀଙ୍କୁ ଦେଇ ତାଙ୍କୁ ସାକ୍ଷୀଗୋପାଳ ପାଖ ନୂଆଗାଁରେ ସ୍ଥାୟୀଭାବରେ ରଖାଇବାକୁ ବ୍ୟବସ୍ଥା କରୁଥିଲେ ।

ହତ୍ୟାର ପନ୍ଦର ଦିନ ପୂର୍ବରୁ ତାଙ୍କର କାର୍ଯ୍ୟ-ନିର୍ଘଣ୍ଟରେ ବ୍ୟତିକ୍ରମ ଦେଖାଗଲା । ସେ ଆରାମଚୌକିରେ ବସି ଅତୀତର ଡାଏରୀ ପଢ଼ିବାକୁ ଲାଗିଲେ । ଡାଇରୀରେ ଥିବା ବିଶିଷ୍ଟ ଘଟଣାମାନ ପାଖରେ ଥିବା ଲୋକମାନଙ୍କୁ ଶୁଣାଇବାକୁ ଆଗ୍ରହ ପ୍ରକାଶ କରୁଥିଲେ ।

୧୯୪୫ ମସିହା ମଇ ମାସ ପ୍ରଥମ ସପ୍ତାହର ଏସବୁ ଘଟଣା । ପୀତାମ୍ବରୀ ଓ ଧର୍ମପୁତ୍ର ଜଗବନ୍ଧୁଙ୍କୁ ମେ ମାସ ୧୮ ତାରିଖ ଦିନ ନୂଆଗାଁରେ ଛାଡ଼ିଆସିବାକୁ ସ୍ଥିରହୋଇଥିଲା । ରାତିରେ ଶୋଇବା ଆଗରୁ ସେ ନିତି ଦୁଧ ପିଅନ୍ତି । ଦୁଧରେ କେହି କାଳେ ବିଷ ମିଶାଇ ଦେଇଥିବ, ତାହା ସେ ବରାବର ଆଶଙ୍କା କରୁଥିଲେ, ତେଣୁ ପରୀକ୍ଷା କରି ଦୁଧ ପିଇବାରେ ସେ ଅଭ୍ୟସ୍ତ ଥିଲେ । ସେ ଏଥିପାଇଁ ଗୋଟିଏ ବିରାଡ଼ି ପୋଷିଥିଲେ । ବିରାଡ଼ିକୁ ପ୍ରଥମେ ଦୁଧ ପିଇବାକୁ ଦେଇ ପରେ ନିଜେ ପିଅନ୍ତି । ମାତ୍ର ହତ୍ୟାର ଦୁଇ ଚାରିଦିନ ପୂର୍ବରୁ ଦୁଧ ପିଇବା ବେଳେ ବିରାଡ଼ିକୁ ନ ଦେଖି ସେ ଦୁଧ ପିଇଲେ ନାହିଁ । ଆରଦିନ ବିରାଡ଼ି ଖୋଜା ହୋଇ ଆସିଲା, ମାତ୍ର ଦୁଇ ଦିନ ପରେ ବିରାଡ଼ି ଘରେ ମରିପଡ଼ିଥିବାର ଦେଖାଗଲା । ବିରାଡ଼ି ମରିଯିବା ପରେ ସେ ପରୀକ୍ଷା ନ କରି ଦୁଧ ପିଇବାକୁ ବାଧ ହେଲେ ।

୧୯୪୫ ମସିହା ମଇ ମାସ ୧୬ ତାରିଖରେ ପ୍ରହରାଜ ନିଜ ବସାରେ ସକାଳ ସାତଟାବେଳେ ଶଶିଭୂଷଣ ରାୟ ଏବଂ ନରସିଂହ ମହାପାତ୍ରଙ୍କ ସହ ନାନା ଆଳାପ ଓ ଆଲୋଚନା କରିବା ପରେ କଚେରିକୁ ଗଲେ । ୧୮ ତାରିଖରେ ସାକ୍ଷୀଗୋପାଳ ଯିବାକୁ ସ୍ଥିର ହୋଇଥିଲା । ସନ୍ଧ୍ୟାବେଳେ ଜମି ବିକ୍ରିପାଇଁ କବଲା ଚିଠା କରୁ କରୁ ୯ଟା ବାଜିଗଲା । ସନ୍ଧ୍ୟା ସାଢ଼େ ସାତଟାବେଳେ ସେ ପ୍ରତିଦିନ ଶୋଇବାକୁ ଯାଆନ୍ତି । ବିଳମ୍ବ ହୋଇଯିବାରୁ ତରତର ହୋଇ ଦୁଧ ପିଇବାକୁ ଗଲେ । ପିଇବା ମାତ୍ରେ ବିଷ ବୋଲି କ୍ଷୀଣ ସ୍ୱରରେ କହି ଢ଼ଳିପଡ଼ିଲେ । ଡାକ୍ତରଖାନାରେ ରାତି ଦଶଟା ବେଳେ ସବୁ ଶେଷ । ତାଙ୍କର ମୃତ୍ୟୁ ଦିବସ ୧୯୪୫ ମସିହା ମେ ମାସ ୧୬ ତାରଖ ବୁଧବାର ବୈଶାଖ ଶୁକ୍ଳପକ୍ଷ ପଞ୍ଚମୀ ।

ଶବ-ବ୍ୟବଚ୍ଛେଦ ପରେ ସତୀଚଉରାରେ ଶବ-ସଂସ୍କାର ସମ୍ପନ୍ନ ହେଲା । ତାହାପରେ ପୋଲିସ୍ ଅନୁସନ୍ଧାନ ଚାଲିଲା । ପୁତ୍ର ଚନ୍ଦ୍ରଶେଖର ଓ ଚାକର ରାଘବକୁ ଗିରଫ କରାଗଲା । ପାଞ୍ଚ ସାତ ଦିନ ପରେ ସେମାନେ ଜାମିନ୍‌ରେ ଖଲାସହେଲେ । ପୀତାମ୍ବରୀ ଦେବୀ ଏବଂ ଜଣେ ଅଳଙ୍କାର ଦୋକାନୀକୁ ଗିରଫ କରିବାକୁ ଉଦ୍ୟମ ହେଲା । ଅଳଙ୍କାର ଦୋକାନୀ ଗିରଫ ହୋଇ ନ ଥିଲେ, ପୀତାମ୍ବରୀ ଗିରଫ ହୋଇଥିଲେ । ପ୍ରହରାଜଙ୍କୁ ଦୁଧ ସଙ୍ଗରେ ପୋଟାସିୟମ୍ ସାଇନାଇଡ୍ ଦିଆଯାଇଥିଲା । ଏ ବିଷର ଉଗ୍ରତା କିଛି ପରିମାଣ କମାଇ ଲାଇସେନ୍ସପ୍ରାପ୍ତ ଅଳଙ୍କାର ଦୋକାନକୁ ବିକ୍ରୟ କରାଯାଇଥାଏ ।

ଅନେକ ଦିନ ମକଦ୍ଦମା ଚାଲିଲା ପରେ ପୀତାମ୍ବରୀ ଦେବୀ ସନ୍ଦେହରେ ମୁକୁଳିଲେ । କଟକରେ ଥିବା କୋଠାବାଡ଼ି ଏବଂ ଭାଷାକୋଷ ସ୍ୱତ୍ୱଘେନି ଚନ୍ଦ୍ରଶେଖର ଓ ପୀତାମ୍ବରୀଙ୍କ ମଧ୍ୟରେ ଅନେକ ଦିନ ମକଦମା ଚାଲିଲା, ଶେଷରେ ଚନ୍ଦ୍ରଶେଖର ଜିତିଲେ । ୧୯୫୨ ମସିହାରେ କୋର୍ଟଙ୍କ ନିର୍ଦ୍ଦେଶରେ ପୀତାମ୍ବରୀଙ୍କୁ ଭାଷାକୋଷ ଆଶ୍ରମ ଛାଡ଼ିବାକୁ ପଡ଼ିଥିଲା ।

ପ୍ରହରାଜଙ୍କ ହତ୍ୟା ମକଦ୍ଦମାରେ ଜଷ୍ଟିସ୍ ହରିହର ମହାପାତ୍ର ସେତେବେଳେ ପୀତାମ୍ବରୀଙ୍କ ତରଫରୁ ଓକିଲ ଥିଲେ । ସେ ତାଙ୍କର 'ଜୀବନ ଓ ଜୀବିକା' ପୁସ୍ତକରେ ଲେଖିଛନ୍ତି ଯେ, ପ୍ରହରାଜ ଜୀବିତାବସ୍ଥାରେ ମହାପାତ୍ରଙ୍କୁ ଡାକି କହିଥିଲେ, ସେ କଟକ

ଘରଟିକୁ ପୀତାମ୍ବରୀଙ୍କୁ ଦତ୍ତ କରିଛନ୍ତି । ତାଙ୍କ ଅନ୍ତେ ତାଙ୍କ ପୁଅ-ନାତିମାନେ ସେଥିରେ ବାଧା ଦେଇ ପାରନ୍ତି । ଯଦି କେଶ୍ ହୁଏ, ପୀତାମ୍ବରୀଙ୍କୁ ସାହାଯ୍ୟ କରିବାକୁ ମହାପାତ୍ରଙ୍କୁ ଅନୁରୋଧ କରିଥିଲେ ଏବଂ ତାଙ୍କୁ ରେଜିଷ୍ଟ୍ରି ଦତ୍ତପତ୍ରର କାଗଜପତ୍ର ଦେଇଥିଲେ । ପ୍ରହରାଜ ମଧ୍ୟ କହିଥିଲେ ଯେ, ଭାଷାକୋଷର ସ୍ୱତ୍ୱ ପୀତାମ୍ବରୀଙ୍କୁ ଉଇଲ କରିଦେଇଛି, ଗାଁ ଘର ଜମିବାଡ଼ି ସବୁ ପିଲାଏ ନିଅନ୍ତୁ । ଅଳ୍ପ ଦିନ ପରେ ପ୍ରହରାଜଙ୍କର ହତ୍ୟା ଘଟଣା ଘଟିଲା । ପୁଲିସ୍ ପୀତାମ୍ବରୀଙ୍କୁ ହତ୍ୟା ଅଭିଯୋଗରେ ଗିରଫ କରି କେସ୍ ଆରମ୍ଭ କଲା । ପ୍ରତିଶ୍ରୁତି ଅନୁସାରେ ଶ୍ରୀ ମହାପାତ୍ର ପୀତାମ୍ବରୀଙ୍କର ଓକିଲ ହୋଇ ତାଙ୍କୁ ସାହାଯ୍ୟକଲେ । ସେସନ୍ସ୍ କୋର୍ଟରେ ଅନେକ ଦିନଧରି କେସ୍ ଚାଲିଲା । ପୀତାମ୍ବରୀଙ୍କ ପ୍ରତି କେଉଁଆଡୁ ସହାନୁଭୂତି ନ ଥିଲା । ପ୍ରତ୍ୟକ୍ଷଦର୍ଶୀ ଓ ପ୍ରତ୍ୟକ୍ଷ ପ୍ରମାଣ ଅଭାବର ସୁଯୋଗ ନେଇ ଏକାଧିକ ବ୍ୟକ୍ତିଙ୍କ ଉପରେ ସନ୍ଦେହର ସମ୍ଭାବନା ପ୍ରତିପାଦିତ କରିବାକୁ ଶ୍ରୀ ମହାପାତ୍ର ଚେଷ୍ଟାକରୁଥିଲେ । ଶେଷରେ ରାୟ ହେଲା । ପୀତାମ୍ବରୀ ନିର୍ଦ୍ଦୋଷରେ ଖଲାସପାଇଲେ । ପରେ ପ୍ରହରାଜ ଦତ୍ତ କରିଦେଇଥିବା କଟକ ଘର ବିକ୍ରି ପାଇଁ ପୁଅ-ନାତିମାନେ ପୀତାମ୍ବରୀଙ୍କ ବିରୁଦ୍ଧରେ ଦେୱାନୀ ମକଦ୍ଦମା କଲେ । ତଳ କୋର୍ଟରେ ପ୍ରହରାଜଙ୍କ ଦତ୍ତପତ୍ର କାଏମ ରହିଥିଲା । ତା ବିରୁଦ୍ଧରେ ହାଇକୋର୍ଟରେ ଅପିଲ ହେଲା ଏବଂ ହାଇକୋର୍ଟ ଅପିଲ ମଞ୍ଜୁର କରିଥିଲେ । ପୀତାମ୍ବରୀ ଦୟନୀୟ ଅବସ୍ଥାରେ ନୂଆଗାଁରେ କାଳାତିପାତ କରୁଥିଲେ । ପ୍ରହରାଜଙ୍କ ମୃତ୍ୟୁପରେ ପୀତାମ୍ବରୀ ଦେବୀ ବହୁକାଳ ବଞ୍ଚିଥିଲେ । ୧୯୮୯ ମସିହାରେ ତାଙ୍କର ମୃତ୍ୟୁ ହୋଇଥିଲା ।

ପ୍ରହରାଜଙ୍କ ମୃତ୍ୟୁ ପରେ ଜୟପୁର ମହାରାଜା ବିକ୍ରମ ଦେବ ବର୍ମାଙ୍କ ଆନୁକୂଲ୍ୟରେ ସତୀଚଉରାରେ ତାଙ୍କ ସମାଧିରେ ଗୋଟିଏ ସ୍ମୃତି-ସ୍ତମ୍ଭ ନିର୍ମିତ ହୋଇଥିଲା । ଆଠମଲ୍ଲିକ ରାଜାସାହେବ ତାହାକୁ ଉଦ୍‌ଘାଟନ କରିଥିଲେ । ପ୍ରହରାଜଙ୍କ ବନ୍ଧୁ ଶଶିଭୂଷଣ ରାୟ ସ୍ମୃତି-ସ୍ତମ୍ଭ ନିର୍ମାଣର ପ୍ରଧାନ ଉଦ୍ୟୋକ୍ତା ଥିଲେ ।

**ଉପସଂହାର –**

ପ୍ରହରାଜଙ୍କ ଯନ୍ତ୍ରଣାମୟ ଶେଷଜୀବନ ଓ ଦୁଃଖଦାୟକ ଅପ୍ରାକୃତିକ ରହସ୍ୟାବୃତ ବିୟୋଗ ତାଙ୍କ ପାରିବାରିକ ପରିସ୍ଥିତି ଏବଂ କୁକର୍ମର ଶେଷ ପରିଣାମ ବୋଲି ପ୍ରତୀୟମାନ ହୁଏ । ତାଙ୍କ କୁକର୍ମର ଫଳ ସେ ନିଜେ ଭୋଗକଲେ । ମାତ୍ର ତାଙ୍କର ସାରା ଜୀବନର ପ୍ରଜ୍ଞା, ଏକାଗ୍ରଚିତ୍ତ ଅଧ୍ୟବସାୟ, ନିଷ୍ଠା ଓ ସାଧନାର ସୁଫଳ ଓଡ଼ିଆଜାତି ଭୋଗକଲା । ତାଙ୍କ ଭାଷାକୋଷ ଓଡ଼ିଆ ଭାଷାର କୀର୍ତ୍ତିସ୍ତମ୍ଭ କୋଣାର୍କ । ତାଙ୍କର ଭାଷାକୋଷ ଏବଂ ସାହିତ୍ୟ କୃତି ଓଡ଼ିଆ ଜାତି ଓ ଭାଷାକୁ ତାଙ୍କର ଅନବଦ୍ୟ ଅବଦାନ ।

ସେ ଜଣେ ଅତି ତୀକ୍ଷ୍ଣବୁଦ୍ଧିସମ୍ପନ୍ନ ଅଧ୍ୟବସାୟୀ, ଦୃଢ଼ମନା ବ୍ୟକ୍ତି ଥିଲେ । ଓଡ଼ିଆ ଜାତି ଏବଂ ତାର ଭାଷା ଓ ସାହିତ୍ୟର ଉନ୍ନତି ତାଙ୍କର ସର୍ବଦା ଧ୍ୟେୟ ଥିଲା । ସେ ଯେଉଁ କାର୍ଯ୍ୟ କରିବାକୁ ଇଚ୍ଛା କରୁଥିଲେ, ଶତ ବାଧାବିଘ୍ନ ସତ୍ତ୍ୱେ ସେ ତାହା ସମାପନ କରୁଥିଲେ । ଭାଷାକୋଷର ସଂକଳନ ଏହାର ଜ୍ୱଳନ୍ତ ଉଦାହରଣ । ଯୁବକ ଅବସ୍ଥାରୁ ସେ ସଂସ୍କାରବାଦୀ

ଥିଲେ । ଆମର ପୁରାତନ ଓ ନୂତନ ଉଭୟ ସମାଜରୁ କୁସଂସ୍କାର ଓ ଆବର୍ଜନା ଦୂର କରିବା ପାଇଁ ନିର୍ଭୟରେ ମତ ବ୍ୟକ୍ତ କରୁଥିଲେ । ଏ ବିଷୟରେ ସେ ପୂର୍ଣ୍ଣ ସ୍ପଷ୍ଟବାଦୀ ଥିଲେ ଏବଂ ଏପରି କାର୍ଯ୍ୟରେ ନିନ୍ଦା ଓ ପ୍ରଶଂସା ପ୍ରତି ସେ ଉଦାସୀନ ଥିଲେ । ଭାରତର ଜାତୀୟ ଆନ୍ଦୋଳନକୁ ବିରୋଧ ଏବଂ ଇଂରେଜ ସରକାର ଓ ରାଜାଜମିଦାରମାନଙ୍କୁ ପ୍ରଶଂସା କରିବା ସତ୍ତ୍ୱେ ସେ ଦେଶଦ୍ରୋହୀ ନ ଥିଲେ । ଓଡ଼ିଶାର ସେ ଜଣେ ବରପୁତ୍ର ଥିଲେ । ତାଙ୍କର ଭାଷାକୋଷ ସଂକଳନ ଏବଂ ଓଡ଼ିଆ ସାହିତ୍ୟକୁ ଅବଦାନ ନିମିତ୍ତ ସେ ଓଡ଼ିଆଜାତିର ଚିରସ୍ମରଣୀୟ ।



**ସହାୟକ ପୁସ୍ତକ –**


୧. ଗୋପାଳ ଚନ୍ଦ୍ର ପ୍ରହରାଜ –
ଗୌରାଙ୍ଗ ଚରଣ ଦାଶ, ଓଡ଼ିଶା ସାହିତ୍ୟ ଏକାଡେ଼ମୀ

୨. ଜୀବନୀ ଓ ଜୀବନ –
ଡକ୍ଟର କୁଞ୍ଜବିହାରୀ ଦାଶ, ଫ୍ରେଣ୍ଡସ୍ ପବ୍ଲିସର୍ସ୍, କଟକ

୩. ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ –
ଦ୍ୱିତୀୟ ଖଣ୍ଡର ମୁଖବନ୍ଧ – ଗୋପାଳଚନ୍ଦ୍ର ପ୍ରହରାଜ, ୧୯୩୨

୪. ଅମର ଚରିତ –
ନରସିଂହ ମହାପାତ୍ର, ନିଉଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ

୫. ଜୀବନ ଓ ଜୀବିକା –
ହରିହର ମହାପାତ୍ର - ନାଳନ୍ଦା, କଟକ



ଉତ୍କଳପ୍ରେମୀ ଭଞ୍ଜଭୂମିର ଜନନାୟକ
ଶଶିଭୂଷଣ ରଥ

# ଉତ୍କଳପ୍ରେମୀ, ଭଞ୍ଜଭୂମିର ଜନନାୟକ
# ଶଶିଭୂଷଣ ରଥ

**ଜନ୍ମସ୍ଥାନ ଓ ଜନ୍ମସମୟ –**

ଶ୍ରୀଯୁକ୍ତ ଶଶିଭୂଷଣ ରଥ ଉନବିଂଶ ଓ ବିଂଶ ଶତାବ୍ଦୀର ଓଡ଼ିଆମାନଙ୍କର ନବଜାଗରଣ ଓ ଦେଶମିଶ୍ରଣ ଆନ୍ଦୋଳନର ଜଣେ ତୁଙ୍ଗ ନେତା ଓ ଜନନାୟକ ଥିଲେ । ଦକ୍ଷିଣ-ଓଡ଼ିଶାର ଗଞ୍ଜାମ ଓ କୋରାପୁଟ ଜିଲ୍ଲାମାନ ଓଡ଼ିଶା ସହ ମିଶିବାରେ ତାଙ୍କର ଅବଦାନ ଅବିସ୍ମରଣୀୟ । ସେ ୧୮୮୫ ମସିହା ଜାନୁଆରୀ ପହିଲାରେ ଗଞ୍ଜାମ ଜିଲ୍ଲାର ସୋରଡ଼ା ଗାଁରେ ଜନ୍ମଗ୍ରହଣ କରିଥିଲେ । ସୋରଡା ଗ୍ରାମ ଗଞ୍ଜାମ ଜିଲ୍ଲାର ମୁଖ୍ୟ ସହର ବ୍ରହ୍ମପୁରଠାରୁ ଉତ୍ତର-ପଶ୍ଚିମ ଦିଗରେ ୭୫ କିଲୋମିଟର ଦୂରରେ, ଋଷିକୁଲ୍ୟା ନଦୀ କୂଳରେ ଅବସ୍ଥିତ । ସୋରଡ଼ା ଗଞ୍ଜାମ ଓ କନ୍ଧମାଳ ଜିଲ୍ଲା ସୀମାରୁ ଅଳ୍ପଦୂରରେ ଅବସ୍ଥିତ ଏବଂ ଭଞ୍ଜନଗର ସହରଠାରୁ ଏହାର ଦୂରତା ମଧ୍ୟ ଅଳ୍ପ । ଗଞ୍ଜାମ ଜିଲ୍ଲାର ଏହି ଆଦିବାସୀବହୁଳ ଅଞ୍ଚଳରେ ସୋରଡ଼ା ବର୍ତ୍ତମାନ ଗୋଟିଏ ସ୍ୱଚ୍ଛଳ ଛୋଟ ସହର । ଏଠାରେ ସ୍କୁଲ, କଲେଜ, ଚିକିତ୍ସାଳୟ ଏବଂ ବିଭିନ୍ନ ସରକାରୀ ଅଫିସ୍‌ମାନ ଅଛି ଏବଂ ବ୍ରହ୍ମପୁର ସହରରୁ ଏଠାକୁ ନିୟମିତ ବସ୍ ଯାତାୟାତ କରୁଛି । ୧୯୦୦ ମସିହାରୁ ସୋରଡ଼ା ସହରର ଉପକଣ୍ଠରେ ଋଷିକୂଲ୍ୟା ଜଳସେଚନ ଯୋଜନା ଅନୁସାରେ ଜଳଭଣ୍ଡାର ନିର୍ମିତ ହୋଇ ସଂପୃକ୍ତ ଅଞ୍ଚଳରେ ଜଳସେଚନ କେନାଲ୍‌ମାନ କାର୍ଯ୍ୟ କରୁଛି । ସୋରଡ଼ା ଜଳଭଣ୍ଡାରରୁ ମଧ୍ୟ ବ୍ରହ୍ମପୁର ସହରକୁ ପିଇବା ପାଣି ଯୋଗାଇଦିଆଯାଉଛି । ଜଳସେଚନର ସୁବିଧା ହେତୁ ଏ ଅଞ୍ଚଳର କୃଷି ସମୃଦ୍ଧ ହୋଇଛି ।

ମାତ୍ର ୧୮୮୫ରେ ଶଶିବାବୁଙ୍କ ଜନ୍ମ ସମୟରେ ଋଷିକୂଲ୍ୟା ନଦୀ-ଯୋଜନା କାର୍ଯ୍ୟକାରୀ ହୋଇନଥିଲା । ଆଦିବାସୀବହୁଳ ସୋରଡ଼ା ରାଜ୍ୟ ବଣ ପାହାଡ଼ ନଦୀ ନାଳରେ ପୂର୍ଣ୍ଣ ଥିଲା । ପ୍ରାଚୀନ କାଳରେ ସୋରଡ଼ା ଖିଡ଼ିସିଙ୍ଗ ରାଜ୍ୟର ଅଂଶ ଥିଲା; ପରେ ଏହା ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ହୋଇଥିଲା । ଉନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବ୍ରିଟିଶ ସରକାରଙ୍କ ଅମଳରେ ଏହା ଚିରସ୍ଥାୟୀ ବନ୍ଦୋବସ୍ତ ଜମିଦାରି ହୋଇଥିଲା । ୧୮୩୩ ମସିହାରେ ଏ ରାଜ୍ୟର ଜମିଦାର ରାଜା ସରକାରୀ ଜମାବନ୍ଦୀ ନିର୍ଦ୍ଧାରିତ ସମୟରେ ଦେଇ ନ ପାରିବାରୁ ବ୍ରିଟିଶ ସରକାର ଏ ଜମିଦାରିକୁ ନିଲାମ କରିଥିଲେ ଏବଂ ପଡ଼ୋଶୀ ଘୁମୁସର

ରାଜ୍ୟର ରାଜା ଆଠ ହଜାର ଟଙ୍କାରେ ସୋରଡ଼ା ଜମିଦାରିକୁ କିଣିନେଇଥିଲେ ଏବଂ ଏହା ଘୁମୁସର ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ସେତେବେଳେ ଘୁମୁସର ରାଜ୍ୟରେ ବ୍ରିଟିଶ ସରକାରଙ୍କ ବିରୋଧରେ ବିଦ୍ରୋହ ହୋଇଥିଲା । ବିଦ୍ରୋହ ଦମନ ପାଇଁ ମାନ୍ଦ୍ରାଜ ପ୍ରେସିଡ଼େନ୍ସିର ରେଭିନ୍ୟୁ ବୋର୍ଡ଼ ସଦସ୍ୟ ଜର୍ଜ ଏଡ଼ୱାର୍ଡ଼ ରସେଲ ସ୍ପେସିଆଲ୍ କମିସନରରୂପେ ଘୁମୁସର ଆସିଥିଲେ । ସେ ବିଦ୍ରୋହ ଦମନ କରିବା ସଙ୍ଗେ ସଙ୍ଗେ ଘୁମୁସର ରାଜ୍ୟକୁ ବାଜ୍ୟାପ୍ତ କରିଥିଲେ ଏବଂ ସୋରଡ଼ା ସହିତ ଘୁମୁସର ଗଞ୍ଜାମ ଜିଲ୍ଲାର ଗୋଟିଏ ସବ୍‌ଡ଼ିଭିଜନ ହୋଇଥିଲା । ଏହି ସବ୍‌ଡିଭିଜନରେ ସୋରଡ଼ା ଗୋଟିଏ ତହସିଲ୍ ହୋଇଥିଲା ।

ପରେ ୧୮୬୬ ମସିହାରେ ନ'ଅଙ୍କ ଦୁର୍ଭିକ୍ଷରେ ଓଡ଼ିଶା ଉପକୂଳବର୍ତ୍ତୀ ଅନ୍ୟ ଜିଲ୍ଲାମାନଙ୍କ ସମେତ ଗଞ୍ଜାମ ଜିଲ୍ଲାରେ ବହୁ ଲୋକ ଅନାହାରରେ ମରିଯାଇଥିଲେ । ତାହା ଫଳରେ ଦୁର୍ଭିକ୍ଷ ପରେ ବ୍ରିଟିଶ ସରକାର ଦୁର୍ଭିକ୍ଷ ନିରାକରଣ ପାଇଁ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଜଳସେଚନ ପ୍ରକଳ୍ପମାନ କାର୍ଯ୍ୟକାରୀ କରିବାକୁ ଉଦ୍ୟମ କରିଥିଲେ । ଗଞ୍ଜାମ ଜିଲ୍ଲାରେ ଋଷିକୁଲ୍ୟା ଜଳସେଚନ ଯୋଜନା କରି ସରକାର ୧୮୬୮ ଓ ୧୮୭୨ ମସିହା ମଧ୍ୟରେ ସର୍ଭେ ରିପୋର୍ଟ ପ୍ରସ୍ତୁତ କରାଇଥିଲେ । ମାତ୍ର ବହୁ ବିଳମ୍ବରେ, ୧୮୮୪ ମସିହାରେ ସୋରଡ଼ା ସହର ଉପକଣ୍ଠରେ ଜଳଭଣ୍ଡାର ନିର୍ମାଣ ଆରମ୍ଭ ହୋଇଥିଲା ଏବଂ ଏହା ୧୯୦୦ ମସିହାରେ ଶେଷହୋଇଥିଲା । ଯୋଜନା ଅନ୍ତର୍ଗତ କେନାଲ ନିର୍ମାଣ ଶେଷ ହେବା ପରେ ୧୯୦୨ ମସିହାରେ ସଂପୂର୍ଣ୍ଣ ଋଷିକୁଲ୍ୟା ଜଳସେଚନ ଯୋଜନା କାର୍ଯ୍ୟକାରୀ ହୋଇଥିଲା ।

ଏକଥା ମଧ୍ୟ ସାଧାରଣ ଭାବରେ ଜଣା ଯେ, ୧୯୩୬ ମସିହା ପର୍ଯ୍ୟନ୍ତ ଦକ୍ଷିଣ-ଓଡ଼ିଶାର ସମଗ୍ର ଗଞ୍ଜାମ ଓ କୋରାପୁଟ ଜିଲ୍ଲା ମାନ୍ଦ୍ରାଜ ପ୍ରେସିଡ଼େନ୍ସିର ଅନ୍ତର୍ଭୁକ୍ତ ଥିଲା । ପୁରାକାଳରୁ ବିଶେଷତଃ ଦ୍ୱାଦଶ ଶତାବ୍ଦୀରୁ ଗଙ୍ଗବଂଶ ରାଜାମାନଙ୍କର କଳିଙ୍ଗ ଓ ଉତ୍କଳରେ ରାଜତ୍ୱ ସମୟରୁ ଗଞ୍ଜାମ, ପୁରୀ, କଟକ ଓ ବାଲେଶ୍ୱର ଜିଲ୍ଲା ସାଧାରଣତଃ ସୁବର୍ଣ୍ଣରେଖା ନଦୀଠାରୁ ମହେନ୍ଦ୍ରଗିରି ପର୍ଯ୍ୟନ୍ତ ଅଞ୍ଚଳ ଓଡ଼ିଆମାନଙ୍କର ଜନଜୀବନ ଓ ଓଡ଼ିଆ ସଂସ୍କୃତିର କେନ୍ଦ୍ରସ୍ଥଳ ଥିଲା ଏବଂ ପୁରୀ ଓ କଟକ ସହର ଏହି ରାଜ୍ୟର କେନ୍ଦ୍ରବିନ୍ଦୁ ଥିଲା । ମାତ୍ର ୧୫୭୧ ଖ୍ରୀଷ୍ଟାବ୍ଦରୁ ଗଞ୍ଜାମ ଓ କୋରାପୁଟ ଅଞ୍ଚଳ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ଗୋଲକୁଣ୍ଡା ରାଜ୍ୟର ଅଙ୍ଗ ହୋଇଥିଲା । ତା'ର ପ୍ରାୟ ଦୁଇଶହ ବର୍ଷ ପରେ, ୧୭୬୬ ମସିହାରେ ହାଇଦରାବାଦର ନିଜାମ ମୋଗଲ ସମ୍ରାଟ୍‌ଙ୍କ ସମ୍ମତିରେ ସେହି ଅଞ୍ଚଳକୁ ଇଂରେଜ ସରକାରଙ୍କୁ ସମର୍ପଣ କରିଥିଲେ । ପ୍ରଶାସନିକ ସୁବିଧା ପାଇଁ ଇଂରେଜ ସରକାର ସେହି ଅଞ୍ଚଳକୁ ମାନ୍ଦ୍ରାଜ ପ୍ରେସିଡେନ୍ସି ସହିତ ମିଶାଇଦେଇଥିଲେ । ସେହି ଦିନଠାରୁ ୧୯୩୬ ମସିହା ପର୍ଯ୍ୟନ୍ତ ଗଞ୍ଜାମ ଓ କୋରାପୁଟ ଜିଲ୍ଲା ମାନ୍ଦ୍ରାଜ ପ୍ରେସିଡ଼େନ୍ସି ଅଧୀନରେ ଥିଲା ।

ସୁତରାଂ ୧୫୭୧ ମସିହାରୁ ୧୯୩୬ ମସିହା ପର୍ଯ୍ୟନ୍ତ ପ୍ରାୟ ତିନିଶହ ପଚାଶ ବର୍ଷରୁ ଊର୍ଦ୍ଧ୍ୱ ସମୟ ଗଞ୍ଜାମ ଏବଂ କୋରାପୁଟ ଅଞ୍ଚଳ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ପ୍ରଥମେ ଗୋଲକୁଣ୍ଡା, ପରେ ମାନ୍ଦ୍ରାଜ ପ୍ରେସିଡେନ୍ସି ଅଧୀନରେ ଥିଲା । ମାତ୍ର ପୁରାକାଳରୁ ଏହି ଅଞ୍ଚଳ ଓଡ଼ିଆଭାଷା ଓ ସଂସ୍କୃତିର ପୀଠସ୍ଥଳୀ ଥିବାରୁ, ସେ ଅଞ୍ଚଳର ଅଧିବାସୀମାନେ ଓଡ଼ିଆ ଭାଷା, ସାହିତ୍ୟ

ଓ ସଂସ୍କୃତିକୁ କେବଳ ପୂର୍ଣ୍ଣମାତ୍ରାରେ ଜୀବିତ ରଖିନଥିଲେ, ସେମାନେ ତାହାକୁ ଅଧିକରୁ ଅଧିକ ସମୃଦ୍ଧ କରୁଥିଲେ । ଐତିହାସିକମାନଙ୍କ ମତରେ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଘୁମୁସର ରାଜବଂଶରେ ୧୬୮୫ ମସିହାରେ ଜନ୍ମଗ୍ରହଣ କରିଥିଲେ ଏବଂ ୧୭୫୬ ମସିହାରେ ତାଙ୍କର ତିରୋଧାନ ହୋଇଥିଲା । ତାଙ୍କର ତିରୋଧାନ ପର୍ଯ୍ୟନ୍ତ ଗଞ୍ଜାମ ଜିଲ୍ଲା ବ୍ରିଟିଶ ଶାସନ ଅଧୀନକୁ ଯାଇନଥିଲା । ଉପେନ୍ଦ୍ର ଭଞ୍ଜ ଅଷ୍ଟାଦଶ ଶତାବ୍ଦୀରେ ଓଡ଼ିଆ ଭାଷାର ସର୍ବଶ୍ରେଷ୍ଠ କବି ଥିଲେ । ଆଜିଯାଏଁ ସୁଦ୍ଧା ତାଙ୍କର କାବ୍ୟ-କବିତା ଓଡ଼ିଆ ସାହିତ୍ୟକୁ ଶ୍ରେଷ୍ଠ ଅବଦାନ ବୋଲି ପରିଗଣିତ ହୋଇଛି ।

ଗଞ୍ଜାମ ଜିଲ୍ଲା ୧୭୬୬ ମସିହାରେ ବ୍ରିଟିଶ ଶାସନାଧୀନ ହୋଇ ମାନ୍ଦ୍ରାଜ ପ୍ରେସିଡେନ୍ସିର ଅନ୍ତର୍ଭୁକ୍ତ ଥିବା ସମୟରେ ମଧ ଓଡ଼ିଆ ସଂସ୍କୃତି ଓ ସାହିତ୍ୟର କେନ୍ଦ୍ରସ୍ଥଳ ଥିଲା । ବ୍ରିଟିଶ ସରକାର ୧୮୦୫ ମସିହାରୁ ଉକ୍ତ ସରକାର ଅନ୍ତର୍ଭୁକ୍ତ ଗଞ୍ଜାମ ଓ କୋରାପୁଟ ଜିଲ୍ଲାରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଥା ଅବଲମ୍ବନ କରିଥିଲେ । ସେହି ପ୍ରଥାନୁସାରେ ସେ ଅଞ୍ଚଳରେ ଜୟପୁର, ପାରଳାଖେମୁଣ୍ଡି ପରି ସମସ୍ତ ବଡ଼ ରାଜ୍ୟ ଏବଂ ବଡ଼ଖେମୁଣ୍ଡି, ସାନଖେମୁଣ୍ଡି, ଚିକିଟି, ଧରାକୋଟ ଓ ଖଲ୍ଲିକୋଟ ପ୍ରଭୃତି ସମସ୍ତ ଛୋଟ ରାଜ୍ୟ ଚିରସ୍ଥାୟୀ ବନ୍ଦୋବସ୍ତ ଜମିଦାରିରେ ପରିଣତ ହୋଇଥିଲେ । ଯଦିଓ ସେହି ରାଜ୍ୟମାନଙ୍କର ଜମିଦାରମାନେ ପୂର୍ବପରି ଲୋକମାନଙ୍କ ମଧ୍ୟରେ ଏବଂ ସରକାରୀ କାଗଜପତ୍ରରେ ରାଜା ମହାରାଜାରୂପେ ପରିଗଣିତ ହେଉଥିଲେ, ବ୍ରିଟିଶ ସରକାର ସେମାନଙ୍କ ରାଜପଦକୁ ସ୍ୱୀକାର କରିଥିଲେ ଏବଂ କେତେକ ବଡ଼ ରାଜ୍ୟର ରାଜାମାନଙ୍କୁ ମହାରାଜା ପଦବୀ ପ୍ରଦାନ କରିଥିଲେ । ସେହି ଅଞ୍ଚଳର ଏହି ରାଜା-ମହାରାଜାମାନେ ପୂର୍ବ ପରମ୍ପରା ଅନୁସାରେ ଓଡ଼ିଶାର ପୁରୀରାଜା ଏବଂ ବିଭିନ୍ନ ଗଡ଼ଜାତ ରାଜାମାନଙ୍କ ସହିତ ବୈବାହିକ ସୂତ୍ରରେ ବନ୍ଧୁବାନ୍ଧବ ସମ୍ପର୍କ ସ୍ଥାପନ କରୁଥିଲେ ।

ସେସବୁ ରାଜଦରବାର ଓଡ଼ିଶାର ଅନ୍ୟ ରାଜଦରବାରମାନଙ୍କ ପରି ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ପୃଷ୍ଠପୋଷକ ଥିଲେ । ଫଳରେ ସେ ସବୁ ରାଜ୍ୟମାନଙ୍କର ରାଜା ଓ ପ୍ରଜା ରାଜନୈତିକ ଓ ପ୍ରଶାସନିକ ବ୍ୟବସ୍ଥା ଅନୁସାରେ ମାନ୍ଦ୍ରାଜ ପ୍ରେସିଡେନ୍ସି ଅଧୀନରେ ଥିଲେ ହେଁ, ସାମାଜିକ ଓ ସାଂସ୍କୃତିକ ପରମ୍ପରା ଅନୁସାରେ ସେମାନେ ଓଡ଼ିଶା ରାଜ୍ୟର ଅନ୍ତର୍ଭୁକ୍ତ ଥିଲେ । ସେ ସବୁ ରାଜ୍ୟମାନଙ୍କର ପ୍ରତିଭାବାନ୍ କବି, ଲେଖକ, ସଙ୍ଗୀତ ଓ ନୃତ୍ୟବିଶାରଦ, ଜ୍ୟୋତିଷୀ ଏବଂ ପଣ୍ଡିତମାନେ ଓଡ଼ିଆ ସଂସ୍କୃତିର ଅଙ୍ଗ ଥିଲେ ଏବଂ ସେମାନଙ୍କର ଅମୂଲ୍ୟ ଅବଦାନଦ୍ୱାରା ଓଡ଼ିଆ ସାହିତ୍ୟ, ସଂଗୀତ, ନାଟକ ଏବଂ ସାମାଜିକ ଜୀବନଯାପନ ପ୍ରଣାଳୀ ସମୃଦ୍ଧ ହେଉଥିଲା । କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ପରେ ଅଷ୍ଟାଦଶ, ଊନବିଂଶ ଶତାବ୍ଦୀ ଓ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଗଞ୍ଜାମ ଓ କୋରାପୁଟ ଅଞ୍ଚଳରେ ବହୁ କବି, ସାହିତ୍ୟିକ, ସଙ୍ଗୀତଜ୍ଞ ଏବଂ ଅନ୍ୟ ବିଷୟମାନଙ୍କରେ ପ୍ରତିଭାବାନ୍ ବ୍ୟକ୍ତି ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ଅତି ଉତ୍କୃଷ୍ଟ ଅବଦାନ ଦେଇଛନ୍ତି । ପାରଳାଖେମୁଣ୍ଡି , ଖଲ୍ଲିକୋଟ, ବଡ଼ଖେମୁଣ୍ଡି, ଧରାକୋଟ, ଚିକିଟି, ଜଳନ୍ତର, ଆଠଗଡ଼ (ଗଞ୍ଜାମ) ପ୍ରଭୃତି ରାଜ୍ୟ ଓଡ଼ିଆ

ସାହିତ୍ୟ ଓ ସଂସ୍କୃତିର ବିଶିଷ୍ଟ କେନ୍ଦ୍ର ହୋଇଥିଲା । ବଡ଼ଖେମୁଣ୍ଡିର କବିସୂର୍ଯ୍ୟ ବଳଦେବ ରଥ (୧୭୮୯-୧୮୪୫), ପାରଳାଖେମୁଣ୍ଡିର କବି-କଳହଂସ ଗୋପାଳକୃଷ୍ଣ (୧୭୮୫-୧୮୬୨), ଭାଷାବିତ୍ ପଣ୍ଡିତ ଗୋପୀନାଥ ନନ୍ଦ (୧୮୬୯-୧୯୨୫), ପ୍ରାବନ୍ଧିକ ଶ୍ୟାମସୁନ୍ଦର ରାଜଗୁରୁ (୧୮୬୬-୧୯୦୯), ରାଜକବି ପଦ୍ମନାଭ ନାରାୟଣ ଦେବ (୧୮୭୨-୧୯୦୪), ଗାୟକଶିରୋମଣି ଅପନ୍ନା ପାଣିଗ୍ରାହୀ (୧୮୯୩-୧୯୩୯) ପ୍ରଭୃତିଙ୍କର ଓଡ଼ିଆ ସାହିତ୍ୟ, ସଙ୍ଗୀତ, ଭାଷାତତ୍ତ୍ୱ ପ୍ରଭୃତିକୁ ଉତ୍କୃଷ୍ଟ ଅବଦାନ ସମଗ୍ର ଓଡ଼ିଶାରେ ସର୍ବଜନ-ବିଦିତ ।

ତଥାପି ଗଞ୍ଜାମ ଓ କୋରାପୁଟ ଅଞ୍ଚଳର ଓଡ଼ିଆମାନଙ୍କର ଓଡ଼ିଶାର ଅନ୍ୟ ଅଞ୍ଚଳବାସୀଙ୍କ ସହିତ ସାମାଜିକ ଏବଂ ସାଂସ୍କୃତିକ ଐକ୍ୟ ସତ୍ତ୍ୱେ, ରାଜନୈତିକ ଓ ପ୍ରଶାସନିକ ବିଚ୍ଛିନ୍ନତା ହେତୁ ଆର୍ଥିକ ଉନ୍ନତିରେ ଏବଂ ଭାଷା ଓ ସଂସ୍କୃତିର ସମୃଦ୍ଧିରେ ବହୁ ଅସୁବିଧା ହେଉଥିଲା । ଇଂରେଜ ଶାସନ ସମୟରେ ଗଞ୍ଜାମ ଓ କୋରାପୁଟ ଅଞ୍ଚଳରେ ଶିକ୍ଷାର ପ୍ରସାର ହେଉ ନ ଥିଲା । ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ସେ ଅଞ୍ଚଳରେ କୌଣସି କଲେଜ ନ ଥିଲା । ମଧ୍ୟ-ଇଂରାଜୀ ଓ ଉଚ୍ଚ ଇଂରାଜୀ ବିଦ୍ୟାଳୟମାନଙ୍କର ସଂଖ୍ୟା ମଧ୍ୟ ଅତି ଅଳ୍ପ ଥିଲା । ମାନ୍ଦ୍ରାଜ ପ୍ରେସିଡେନ୍ସିର ସବୁ ସ୍କୁଲ ଓ କଲେଜରେ ତାମିଲ ଓ ତେଲଗୁ ଭାଷା ଶିକ୍ଷା ଦିଆଯାଉଥିଲା । ଗଞ୍ଜାମ ଓ କୋରାପୁଟ ଅଞ୍ଚଳର ସ୍କୁଲମାନଙ୍କରେ ଓଡ଼ିଆ ଶିକ୍ଷାର ସୁବିଧା ନ ଥିଲା । ସରକାରୀ ବିଭାଗମାନଙ୍କରେ ସବୁ ଚାକିରି ତାମିଲ ଓ ତେଲଗୁ ଲୋକମାନେ ଅଧିକାର କରିଥିଲେ । ମାନ୍ଦ୍ରାଜ ପ୍ରେସିଡେନ୍ସିରେ ଓଡ଼ିଆମାନେ ଅବହେଳିତ ସଂଖ୍ୟା-ଲଘୁ ସମ୍ପ୍ରଦାୟ ଥିଲେ । ପ୍ରେସିଡେନ୍ସିର ରାଜଧାନୀ ମାନ୍ଦ୍ରାଜ ସହର ଗଞ୍ଜାମ କୋରାପୁଟ ଅଞ୍ଚଳରୁ ବହୁ ଦୂରରେ ଥିଲା । ୧୯୦୨-୦୩ ମସିହାରେ ରେଳଗାଡ଼ି ଚାଲିବା ଆଗରୁ ଗଞ୍ଜାମ ଅଞ୍ଚଳରୁ ମାନ୍ଦ୍ରାଜ ସହରକୁ ଯିବା ଅତି କଷ୍ଟକର ଥିଲା । ପ୍ରଦେଶର ହାଇକୋର୍ଟ ଓ ବିଶ୍ୱବିଦ୍ୟାଳୟ ମାନ୍ଦ୍ରାଜ ସହରରେ ଥିଲା । ଗଞ୍ଜାମ ଓ କୋରାପୁଟ ଅଞ୍ଚଳର ସାଧାରଣ ଲୋକଙ୍କ ପକ୍ଷରେ କୋର୍ଟ କଚେରି କାର୍ଯ୍ୟରେ ମାନ୍ଦ୍ରାଜ ସହରକୁ ଯିବା ସୁବିଧାଜନକ ନ ଥିଲା । ଗଞ୍ଜାମ ଜିଲ୍ଲାର କଚେରି ଓ ସରକାରୀ ଅଫିସ୍‌ଗୁଡ଼ିକରେ ତେଲଗୁ ଭାଷା ପ୍ରଚଳିତ ଥିଲା । ତେଣୁ ସବୁ କାଗଜପତ୍ର ତେଲଗୁ ଏବଂ ଇଂରାଜୀ ଭାଷାରେ ମୁଦ୍ରିତ ହେଉଥିଲା । ଏହି ଜିଲ୍ଲାମାନଙ୍କର ସାଧାରଣ ଲୋକମାନେ ଦରିଦ୍ର ଓ ନିରକ୍ଷର ଭାବରେ ମାମୁଲି ଚାଷବାସ କରି ଗ୍ରାମମାନଙ୍କରେ ଅନଭିଜ୍ଞ, ଅସହାୟ ହୋଇ ବାସକରୁଥିଲେ । ୧୮୭୦ ମସିହାବେଳକୁ ଜିଲ୍ଲାର ଅତି ମୁଷ୍ଟିମେୟ ଇଂରାଜୀ-ପଢୁଆ ଲୋକ ଏ ଅସୁବିଧାମାନ ବୁଝିପାରିଥିଲେ । ୧୮୬୫ ଓ ୧୮୭୦ ମସିହା ମଧ୍ୟରେ, କଟକ ଓ ବାଲେଶ୍ୱର ଜିଲ୍ଲାରେ ଯେତେବେଳେ ଭାଷା-ଆନ୍ଦୋଳନ ହେଉଥିଲା, ସେତେବେଳେ ଘୁମୁସର ଅଞ୍ଚଳର ଓଡ଼ିଆମାନେ ସରକାରୀ ସ୍ତରରେ ଓଡ଼ିଆ ଭାଷା ପ୍ରଚଳନ ପାଇଁ ସ୍ୱର ଉତ୍ତୋଳନ କରିଥିଲେ ।

ସେଠାରେ ଦେବସ୍ଥଳୀଠାରେ ଅନୁଷ୍ଠିତ ଏକ ସଭାରେ ହୋଇଥିବା ଏ ଦାବି ବୃହତ୍ତର ପରିସରରେ ପରିପ୍ରକାଶ ପାଇଁ ଉଦ୍ୟୋକ୍ତାମାନେ କଟକର ସାପ୍ତାହିକ ଉତ୍କଳ ଦୀପିକାର

ସମ୍ପାଦକଙ୍କ ପାଖକୁ ପତ୍ର ଲେଖିଥିଲେ ଏବଂ ତାହା ପ୍ରକାଶିତ ଓ ପ୍ରସାରିତ ହୋଇଥିଲା । ପରେ ପରେ ଏ ଜିଲ୍ଲାର ଅନ୍ୟ ଅଞ୍ଚଳମାନଙ୍କରୁ ମଧ ଅନୁରୂପ ଦାବିମାନ ହୋଇଥିଲା । ତେଣୁ ମାନ୍ଦ୍ରାଜ ସରକାର ଓଡ଼ିଆମାନଙ୍କୁ ସନ୍ତୁଷ୍ଟ କରିବାକୁ ସରକାରୀ କାଗଜପତ୍ରରେ କିଛି ଓଡ଼ିଆ ମୁଦ୍ରଣ କରିବାକୁ ଚାହିଁଥିଲେ । ଏହି ପରିପ୍ରେକ୍ଷୀରେ ଜଣେ ଓଡ଼ିଆ ଲୋକଙ୍କୁ ପ୍ରେସ୍‌ରେ ଓଡ଼ିଆ ଅକ୍ଷର କମ୍ପୋଜିସନ୍‌ରେ ତାଲିମ୍ ଦେବାପାଇଁ ସ୍ଥିରକରିଥିଲେ । ସେଥିପାଇଁ ଶଶିଭୂଷଣ ରଥଙ୍କ ପିତା ଲମ୍ବୋଦର ମହାପାତ୍ର ମନୋନୀତ ହୋଇଥିଲେ ଏବଂ ଓଡ଼ିଆ ଅକ୍ଷର କମ୍ପୋଜିସନ୍ ଶିକ୍ଷା କରିବା ପାଇଁ ମାନ୍ଦ୍ରାଜ ଯିବାକୁ ସରକାରୀ ଆଦେଶ ପାଇଥିଲେ । ୧୮୮୧ ମସିହା ବେଳକୁ ମଧୁସୂଦନ ଦାସ କଲିକତାରୁ କଟକ ଫେରିଆସି ଉତ୍କଳସଭା ମାଧ୍ୟମରେ ଓଡ଼ିଆଭାଷୀ ଲୋକମାନଙ୍କର ଏକତ୍ରୀକରଣ ପାଇଁ ଚେତନା ସୃଷ୍ଟିକରିବା ନିମିତ୍ତ ଉଦ୍ୟମ କରୁଥିଲେ । ସେତେବେଳେ ଗଞ୍ଜାମ ଜିଲ୍ଲାର ଅନେକ ଲୋକ ମଧ୍ୟ କୋର୍ଟ କଚେରିମାନଙ୍କରେ ଓଡ଼ିଆଭାଷା ପ୍ରଚଳନ ପାଇଁ ସଚେଷ୍ଟ ଥିଲେ ।

୧୮୮୫ ମସିହାରେ ଗଙ୍ଗାଧର ଷଡ଼ଙ୍ଗୀ, ଦ୍ୱୈପାୟନ ରାଓ ଏବଂ ଶ୍ୟାମସୁନ୍ଦର ରାଜଗୁରୁ ପ୍ରଭୃତିଙ୍କ ଉଦ୍ୟମରେ ପାରଳାଖେମୁଣ୍ଡିରେ ଗଞ୍ଜାମର ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷା ନିମିତ୍ତ 'ଉତ୍କଳ ହିତୈଷିଣୀ ସଭା' ସ୍ଥାପିତ ହୋଇଥିଲା । ସେତେବେଳେ ପାରଳାଖେମୁଣ୍ଡିର ରାଜା ଗୌରଚନ୍ଦ୍ର ଦେବ ଏବଂ ଜୟପୁରର ରାଜା ବିକ୍ରମ ଦେବ ଏହାର ପୃଷ୍ଠପୋଷକ ଥିଲେ । ୧୮୮୬ ମସିହାରେ ଏହି ସଭାରେ ଗଞ୍ଜାମ ଜିଲ୍ଲାରେ ପ୍ରତି ସରକାରୀ ଅଫିସରେ ତେଲଗୁ-ଭାଷା ପରି ଓଡ଼ିଆଭାଷା ବ୍ୟବହୃତ ହେବା ସକାଶେ ଜିଲ୍ଲାର ଉତ୍କଳୀୟ ରାଜା ଓ ପ୍ରଜା ସମସ୍ତଙ୍କଠାରୁ ଏକଲକ୍ଷ ସ୍ୱାକ୍ଷର ସଂଗ୍ରହ କରି ମାନ୍ଦ୍ରାଜ ସରକାରଙ୍କୁ ଗୋଟିଏ ଆବେଦନ ପତ୍ର ଦେବା ପାଇଁ ପ୍ରସ୍ତାବ ଗୃହୀତ ହୋଇଥିଲା । ପ୍ରସ୍ତାବଟି କାର୍ଯ୍ୟକାରୀ କରିବା ପାଇଁ ଚାନ୍ଦା ସଂଗ୍ରହ କରାଯାଇଥିଲା ଏବଂ କର୍ମୀ ନିଯୁକ୍ତ କରାଯାଇଥିଲା । ଇଂରାଜୀରେ ଲିଖିତ ଏହି ଆବେଦନପତ୍ର ମାନ୍ଦ୍ରାଜରେ ଗଭର୍ଣ୍ଣର ସୋମପେଣ୍ଟଠାରେ ଦରବାର କରୁଥିବାବେଳେ ତାଙ୍କୁ ଦିଆଯାଇଥିଲା । ଏହା ଫଳରେ ୧୮୯୦ ମସିହା ଜାନୁଆରୀ ମାସଠାରୁ ଜିଲ୍ଲାର ସମସ୍ତ ସରକାରୀ ଅଫିସ୍‌ରେ ଓଡ଼ିଆଭାଷା ପ୍ରଚଳିତ ହୋଇଥିଲା । ସୁତରାଂ ଶଶିଭୂଷଣ ରଥଙ୍କ ଜନ୍ମସମୟ ୧୮୮୫ ମସିହାବେଳକୁ ଗଞ୍ଜାମ ଜିଲ୍ଲାରେ ସରକାରୀ ଅଫିସମାନଙ୍କରେ ଓଡ଼ିଆଭାଷା ପ୍ରଚଳନ ନିମିତ୍ତ ଏବଂ ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷା ପାଇଁ ଗୋଟିଏ ଶକ୍ତିଶାଳୀ ଆନ୍ଦୋଳନର ସୂତ୍ରପାତ ହୋଇଥିଲା ଏବଂ ସାଧାରଣ ଲୋକମାନଙ୍କ ମଧରେ ସେ ବିଷୟରେ ସଚେତନତା ସୃଷ୍ଟିହୋଇଥିଲା ।

### ବଂଶ-ପରମ୍ପରା ଓ ପରିବାର –

୧୮୮୫ ମସିହା ଜାନୁଆରୀ ପହିଲାରେ ଶଶିଭୂଷଣ ସୋରଡ଼ାର ଗୋଟିଏ ପ୍ରତିଷ୍ଠିତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାମହ ନୀଳକଣ୍ଠ ମହାପାତ୍ର ସୋରଡାର ଜଣେ ପ୍ରତିଷ୍ଠିତ ବ୍ୟକ୍ତି ଥିଲେ । ତାଙ୍କର ଏକମାତ୍ର ପୁତ୍ର ଶଶିଭୂଷଣଙ୍କ ପିତା ଲମ୍ବୋଦର ମହାପାତ୍ର ଉଚ୍ଚ ଶିକ୍ଷା ପାଇନଥିଲେ ମଧ ଜଣେ ଜ୍ଞାନୀ ଲୋକ ଥିଲେ । ସେ ଚାଟଶାଳୀରେ

ପ୍ରାଥମିକ ଶିକ୍ଷା ପରେ ନିଜ ଚେଷ୍ଟାରେ ସ୍ଥାନୀୟ ପଣ୍ଡିତମାନଙ୍କଠାରୁ ସଂସ୍କୃତ ଶିକ୍ଷା କରିଥିଲେ । ସେ ନିଜ ଚେଷ୍ଟାରେ ଓଡ଼ିଆ, ତେଲଗୁ ଏବଂ କିଛି ଇଂରାଜୀରେ ଲେଖାପଢ଼ା ଜାଣିଥିଲେ ଏବଂ ମୁକ୍ତିଆରଙ୍କ ପରି ଅଦାଲତରେ ପକ୍ଷମାନଙ୍କ ତରଫରୁ ମକଦ୍ଦମା ଲଢ଼ି-ପାରୁଥିଲେ । ସେ ମଧ୍ୟ ଜଣେ ପରୋପକାରୀ, ସମାଜସେବୀ ଲୋକ ଥିଲେ । ବଢ଼ି, ମରୁଡ଼ି ଓ ଘରପୋଡ଼ି ପ୍ରଭୃତି ବିପଦ ସମୟରେ ସେ ଲୋକମାନଙ୍କୁ ସାହାଯ୍ୟ କରୁଥିଲେ ଏବଂ ବିବାହ, ଉପନୟନ ପ୍ରଭୃତି ଉତ୍ସବରେ ଓ ଗ୍ରାମର ଯାତ୍ରା ପ୍ରଭୃତି ସାମାଜିକ ପର୍ବରେ ସକ୍ରିୟ ଭାଗ ନେଉଥିଲେ ।

ଏହିସବୁ କାର୍ଯ୍ୟ ହେତୁ ସେ ଗ୍ରାମ ଲୋକଙ୍କର ପ୍ରିୟପାତ୍ର ଥିଲେ ଏବଂ ଗ୍ରାମରେ ଜଣେ ନେତୃସ୍ଥାନୀୟ ବ୍ୟକ୍ତି ଥିଲେ । ଏହି ସବୁ ଗୁଣ ହେତୁ ସେ ମଧ୍ୟ ଇଂରେଜ ସରକାରଙ୍କ କର୍ମଚାରୀମାନଙ୍କର ଶୁଭଦୃଷ୍ଟି ଲାଭକରିଥିଲେ । ଉପରେ ଉଲ୍ଲେଖ କରାଯାଇଛି ଯେ, ଗଞ୍ଜାମର ସରକାରୀ କର୍ତ୍ତୃପକ୍ଷଙ୍କ ସୁପାରିସରେ ମାନ୍ଦ୍ରାଜ ସରକାର ତାଙ୍କୁ ମାନ୍ଦ୍ରାଜ ସହରରେ ଓଡ଼ିଆ ଅକ୍ଷର ମୁଦ୍ରଣ କାର୍ଯ୍ୟ ଶିକ୍ଷା କରିବାକୁ ମନୋନୀତ କରିଥିଲେ ଏବଂ ମାନ୍ଦ୍ରାଜ ସହରରେ ସେ ଏକ ବର୍ଷ ରହି ଏଥିପାଇଁ ତାଲିମ୍ ପାଇଥିଲେ । ସରକାରଙ୍କର ଆବଶ୍ୟକ ସମୟରେ ସେ ଓଡ଼ିଆ ଅକ୍ଷର ମୁଦ୍ରଣରେ କମ୍ପୋଜିଟର କାମ କରୁଥିଲେ । ନୀଳକଣ୍ଠ ମହାପାତ୍ରଙ୍କ ସାତ ଝିଅରେ ଲମ୍ବୋଦର ମହାପାତ୍ର ଏକମାତ୍ର ପୁଅ ହୋଇଥିଲେ । ଘଟଣାଚକ୍ରରେ ଲମ୍ବୋଦର ମହାପାତ୍ରଙ୍କର ସାତପୁଅରେ ଗୋଟିଏ ଝିଅ ହୋଇଥିଲେ । ଲୋକେ କହନ୍ତି ଯେ, ନୀଳକଣ୍ଠ ମହାପାତ୍ର ତାଙ୍କ ଇଷ୍ଟଦେବତା ଋଷିକୁଲ୍ୟା ଓ ଜଗାଉ ନଦୀର ମିଳନସ୍ଥଳରେ ଥିବା ପଞ୍ଚାନନ ମହାଦେବଙ୍କୁ ତାଙ୍କ ପୁଅ ଲମ୍ବୋଦରଙ୍କର ସାତପୁଅରେ ଗୋଟିଏ ଝିଅ ହେବାକୁ ବର ମାଗିଥିଲେ । ଦେବତା ତାଙ୍କୁ ସେ ବର ଦେଇଥାଆନ୍ତୁ ବା ନଥାନ୍ତୁ, ଲମ୍ବୋଦର ମହାପାତ୍ରଙ୍କର ସାତ ପୁଅ ଓ ଗୋଟିଏ ଝିଅ ହୋଇଥିଲେ । ଶଶିଭୂଷଣ ରଥ ତାଙ୍କର ଦ୍ୱିତୀୟ ସନ୍ତାନ ଥିଲେ ।

ଲମ୍ବୋଦର ମହାପାତ୍ରଙ୍କର ଜ୍ୟେଷ୍ଠ ଭଉଣୀ ମହୁଲିଆ ଗ୍ରାମର ଦିଗମ୍ବର ରଥଙ୍କୁ ବିବାହ କରିଥିଲେ । ସେ ଦମ୍ପତିଙ୍କର କୌଣସି ସନ୍ତାନ ନଥିଲେ । ଶଶିବାବୁ ମାତୃଗର୍ଭରେ ଥିବାବେଳେ ପୁତ୍ର ସନ୍ତାନ ହେଲେ ଦିଗମ୍ବରଙ୍କୁ ପୋଷ୍ୟପୁତ୍ର ଭାବରେ ଦାନକରିବାକୁ ଲମ୍ବୋଦର ମହାପାତ୍ର ରାଜିହୋଇଥିଲେ । ପିତାମହ ନୀଳକଣ୍ଠଙ୍କର ଆଦେଶକ୍ରମେ ଏ ନିଷ୍ପତ୍ତି ହୋଇଥିଲା । ସୁତରାଂ ଶଶିବାବୁ ଜନ୍ମରୁ ତାଙ୍କ ପିଉସା ମହୁଲିଆ ଗ୍ରାମର ଦିଗମ୍ବର ରଥଙ୍କ ପୋଷ୍ୟପୁତ୍ର ହୋଇଥିଲେ । ତେଣୁ ଶଶିବାବୁ ଆଜନ୍ମରୁ ଶଶିଭୂଷଣ ମହାପାତ୍ର ନହୋଇ ଶଶିଭୂଷଣ ରଥ ହୋଇଥିଲେ । ତାଙ୍କର ପୋଷ୍ୟପିତା ଦିଗମ୍ବର ରଥ ଶେଷ ଭଞ୍ଜରାଣୀଙ୍କର କିଲ୍ଲାଦାର ଥିଲେ ।

ଶଶିବାବୁ କିନ୍ତୁ ପିଲାଦିନେ ମହୁଲିଆରେ ନ ରହି, ଅନ୍ୟ ଭାଇଭଉଣୀମାନଙ୍କ ସହିତ ସୋରଡ଼ାରେ ରହୁଥିଲେ । ସୋରଡ଼ାର ପ୍ରାକୃତିକ ଦୃଶ୍ୟ ଓ ପରିବେଶ ରମଣୀୟ ଥିଲା । ଋଷିକୁଲ୍ୟା ଜଳଭଣ୍ଡାର ସେତେବେଳେ ନିର୍ମିତ ହୋଇନଥିଲା । ଗାଁର ପୂର୍ବପଟେ ଜଗାଉ ନଦୀ ଏବଂ ଉତ୍ତରରେ ଋଷିକୁଲ୍ୟା ନଦୀ ପ୍ରବାହିତ ହେଉଥିଲା । ଋଷିକୁଲ୍ୟା ନଦୀର ଅପର

ପାର୍ଶ୍ୱରେ ଜଙ୍ଗଲ ଥିଲା ଏବଂ ପଶ୍ଚିମରେ ଦୂରରେ ପାହାଡ଼ ଦେଖାଯାଉଥିଲା । ଏହି ପ୍ରାକୃତିକ ପରିବେଶ ମଧ୍ୟରେ ଶଶିଭୂଷଣ ଭାଇଭଉଣୀଙ୍କ ସହିତ ଖେଳିବାକୁ ଏବଂ ବୁଲିବାକୁ ଭଲ ପାଉଥିଲେ । ତେଣୁ ପିଉସାଙ୍କ ଚେଷ୍ଟା ସତ୍ତ୍ୱେ ମହୁଲିଆକୁ ଯିବାକୁ ରାଜିହେଉନଥିଲେ ।

## ବାଲ୍ୟ-ଜୀବନ ଓ ଶିକ୍ଷା –

ଶଶିବାବୁଙ୍କର ପ୍ରାଥମିକ ଶିକ୍ଷା ସୋରଡ଼ା ଗାଁର ଚାଟଶାଳୀରେ ଆରମ୍ଭ ହୋଇଥିଲା । ଚାଟଶାଳୀ ଶିକ୍ଷା ପରେ ମାଧ୍ୟମିକ ଶିକ୍ଷାପାଇଁ ତାଙ୍କୁ ପୂଅକରିନେଇଥିବା ପିତା ଦିଗମ୍ବର ରଥ ତାଙ୍କୁ ରସୂଲକୁଣ୍ଡା ନେଇଯାଇଥିଲେ । ଶଶିବାବୁ କିନ୍ତୁ ରସୂଲକୁଣ୍ଡା କିମ୍ବା ମହୁଲିଆରେ ରହିବାକୁ ଭଲପାଉନଥିଲେ; ତେଣୁ ମଝିରେ ମଝିରେ କାହାକୁ ନକହି ପାଦରେ ଚାଲି ଚାଲି ସୋରଡ଼ା ପଳାଇଆସୁଥିଲେ । ଏହିପରି କିଛିବର୍ଷ ଗଲା ପରେ ତାଙ୍କର ଅଭିଭାବକମାନେ ତାଙ୍କୁ ମାଧ୍ୟମିକ ଶିକ୍ଷାପାଇଁ ପାରଳାଖେମୁଣ୍ଡି ପଠାଇଲେ । ସେଠାରେ ଛାତ୍ରାବାସରେ ରହି ସେ ପାଠ ପଢ଼ିଲେ ଏବଂ ୧୯୦୨ ମସିହା ଡ଼ିସେମ୍ବର ମାସରେ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟରୁ ମାଟ୍ରିକୁଲେସନ୍ ପାସ୍ କରିଥିଲେ । ମାଟ୍ରିକୁଲେସନ୍ ପାସ୍ କରିବାର ଦୁଇ ମାସ ପରେ ୧୯୦୩ ମସିହାରେ ତାଙ୍କର ବାଲ୍ୟବିବାହ ଅନୁଷ୍ଠିତ ହୋଇଥିଲା । ସେ ବଡ଼ଗଡ଼ର ମୋହନ ମିଶ୍ରଙ୍କ ଭଉଣୀଙ୍କୁ ବିବାହ କରିଥିଲେ ।

## କର୍ମଜୀବନ : ପ୍ରଥମ ଭାଗ –

ମାଟ୍ରିକୁଲେସନ୍ ପାସ୍ କରିବା ପରେ ଶଶିବାବୁ କଲେଜରେ ପଢ଼ିନଥିଲେ । ୧୯୦୫ ମସିହାରେ କର୍ମସଂସ୍ଥାନ ପାଇଁ ସେ ବମ୍ବେ ଯାଇଥିଲେ । ସେଠାରେ ସେ କୌଣସି ସଂସ୍ଥାରେ ଚାକିରି ନ କରି ପ୍ରଥମେ ମରାଠୀ ଏବଂ ଗୁଜରାଟୀ ଭାଷା ଶିକ୍ଷାକଲେ ଏବଂ ବମ୍ବେର କାଲ୍କିକା ଦେବୀ ରୋଡ଼ରେ ଗୋଟିଏ ଜୋତା ଦୋକାନ ଆରମ୍ଭ କଲେ । ସେଥିପାଇଁ ଲୋକ ଲଗାଇ ଚମଡ଼ା ଜୋତା ତିଆରିକରାଉଥିଲେ । ପ୍ରାୟ ଦୁଇବର୍ଷ କାଳ ତାଙ୍କର ଜୋତା ଦୋକାନ ଭଲ ଚାଲିଥିଲା । ମାତ୍ର ସେ ବ୍ୟବସାୟରେ ତାଙ୍କର ପ୍ରତିଯୋଗୀମାନେ ଈର୍ଷାପରାୟଣ ହୋଇ ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରିଥିଲେ; ଏପରି କି ତାଙ୍କୁ ଜୀବନରୁ ମାରିଦେବେ ବୋଲି ଭୟ ହେଉଥିଲା । ଏପରି ସମୟରେ ୧୯୦୮ ମସିହାରେ ତାଙ୍କୁ କାମଳ ରୋଗ ହୋଇଥିଲା । ସେ ରୋଗରେ ପୀଡ଼ିତ ହୋଇ ସେ ସୋରଡ଼ା ଚାଲିଆସିଲେ । ସେଠାରେ କିଛିଦିନ ରହି ସୁସ୍ଥ ହେବା ପରେ ବମ୍ବେ ଫେରିଯିବାକୁ ଇଚ୍ଛାକରୁଥିଲେ; ମାତ୍ର ଜନ୍ମିତ ପିତା ଲମ୍ବୋଦର ମହାପାତ୍ର ବମ୍ବେରେ ଶଶିବାବୁଙ୍କ ଜୀବନ ପ୍ରତି ବିପଦ ଥିବା ଜାଣିପାରିବାରୁ ସେ ତାଙ୍କୁ ସେଠାକୁ ଫେରିଯିବାକୁ ମନାକଲେ । ଶେଷରେ ପିତାପୁତ୍ର ଉଭୟେ ଯାଇ ବମ୍ବେରେ ଥିବା ଜୋତା ଦୋକାନକୁ ଅତି ଅଳ୍ପ ମୂଲ୍ୟରେ ବିକ୍ରିକରିଦେଇ ଆସିଲେ ।

୧୮୯୦ ମସିହାରୁ ମଧୁସୂଦନ ଦାସ ଓଡ଼ିଆମାନଙ୍କର ଦାରିଦ୍ର୍ୟ ମୋଚନ ପାଇଁ ଓଡ଼ିଶାରେ କୁଟୀରଶିଳ୍ପର ପୁନରୁଦ୍ଧାର ନିମିତ୍ତ ବହୁ ପ୍ରକାର ଉଦ୍ୟମ କରିଥିଲେ । ଓଡ଼ିଶାର ଲୋକମାନଙ୍କୁ ତାରକସି, ଶିଙ୍ଗ, ହାତୀଦାନ୍ତ, ବେତ, ବାଉଁଶ ଏବଂ ଚମଡ଼ା ପ୍ରଭୃତିରେ ବିଭିନ୍ନ ପ୍ରକାର ପଦାର୍ଥ ତିଆରିକରି ବ୍ୟବସାୟ କରିବାକୁ ସେ ଉତ୍ସାହିତ କରୁଥିଲେ । ସେ ସବୁ

ଶିଳ୍ପରେ କାରିଗରମାନଙ୍କୁ ତାଲିମ୍ ଦେବା ପାଇଁ ସେ ତାଙ୍କ ଘର ହତାରେ ଗୋଟିଏ ଆର୍ଟ ସ୍କୁଲ କରିଥିଲେ । ୧୯୦୭ ମସିହାରେ ସେ ବିଲାତ ଯାଇଥିବା ସମୟରେ ସେଠାରେ ଯୌଥ କାରବାରର ସୁବିଧା ବୁଝିପାରିଥିଲେ ଏବଂ ସେ ବିଷୟରେ ଜ୍ଞାନ-କୌଶଳ ଲାଭକରିଥିଲେ । ୧୯୦୫-୦୬ ମସିହାରେ ମଧୁବାବୁ କଟକରେ 'ଉତ୍କଳ ଟାନେରୀ' ନାମରେ ଗୋଟିଏ ଜୋତା କାରଖାନା ଆରମ୍ଭ କରିଥିଲେ । ପରବର୍ତ୍ତୀ ଦୁଇ ଦଶନ୍ଧିରେ ଏହି ଉତ୍କଳ ଟାନେରୀରେ ମଧୁବାବୁ ନିଜର ବହୁ ସମୟ, ଅର୍ଥ ଓ ଶ୍ରମ ନିଯୋଜିତ କରିଥିଲେ । ଓଡ଼ିଶାରେ ଶିଳ୍ପୋନ୍ନତି ନିମିତ୍ତ ଏହି କାରଖାନାକୁ ଓଡ଼ିଶାର ଅର୍ଥନୈତିକ ସ୍ୱାଭିମାନର ପ୍ରତୀକରୂପେ ପ୍ରତିଷ୍ଠିତ କରିବାକୁ ମଧୁବାବୁ ଆପ୍ରାଣ ଚେଷ୍ଟାକରିଥିଲେ । ଲାଭ ଅପେକ୍ଷା ଏହାର ସୁଖ୍ୟାତି ଉପରେ ସେ ଅଧିକ ଗୁରୁତ୍ୱ ଆରୋପ କରୁଥିଲେ । ଏହାକୁ ଗୋଟିଏ ଲାଭଜନକ ଯୌଥ କମ୍ପାନୀରେ ପରିଣତ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ପ୍ରଥମ ଅବସ୍ଥାରେ ଏହି କମ୍ପାନୀ ମଧ୍ୟ ଭାରତର ବିଭିନ୍ନ ଅଞ୍ଚଳରେ ସୁଖ୍ୟାତି ଲାଭକରିଥିଲା; ମାତ୍ର ପରିଶେଷରେ ୧୯୨୬ ମସିହାରେ ବହୁ କ୍ଷତି ହେତୁ ଏହି କାରଖାନା ବନ୍ଦହୋଇଯାଇଥିଲା ।

୧୯୦୮ ମସିହାରେ ଯୁବକ ଶଶିବାବୁ ବମ୍ବେରୁ ଫେରିବାବେଳେ ଉତ୍କଳ ଟାନେରୀ ମାତ୍ର ଦୁଇବର୍ଷ କାମ କରିଥିଲା । ମଧୁବାବୁ ଏଥିରେ ଅଭିଜ୍ଞ ଏବଂ କାର୍ଯ୍ୟଦକ୍ଷ ଯୁବକମାନଙ୍କୁ ନିଯୁକ୍ତି ଦେବାକୁ ଆଗ୍ରହୀ ଥିଲେ । ଜୋତା ବ୍ୟବସାୟରେ ଭଲ ଅଭିଜ୍ଞତା ଥିବା ହେତୁ ଶଶିବାବୁ କଟକରେ ମଧୁବାବୁଙ୍କ ସହିତ ସାକ୍ଷାତ କରିଥିଲେ । ମଧୁବାବୁ ତାଙ୍କୁ ଉତ୍କଳ ଟାନେରୀର ମାନେଜରରୂପେ ନିଯୁକ୍ତ କରିଥିଲେ । ଅଳ୍ପ କେତେ ମାସ ସେଠାରେ କାର୍ଯ୍ୟ କଲା ପରେ, ଶଶିବାବୁ ଜାଣିପାରିଥିଲେ ଯେ, ମଧୁବାବୁ କମ୍ପାନୀର ଲାଭ ଅପେକ୍ଷା ତାହାର ସୁନାମ ଉପରେ ଅଧିକ ଗୁରୁତ୍ୱ ଦେଉଛନ୍ତି । ଏଥିଲାଗି ଅଳ୍ପ ବର୍ଷ ପରେ କାରଖାନା ବହୁ କ୍ଷତିର ସମ୍ମୁଖୀନ ହେବ ବୋଲି ଶଶିବାବୁ ଅନୁମାନ କରିପାରିଥିଲେ । ଉତ୍କଳ ଟାନେରୀରେ ମାନେଜର ଥିବା ବେଳେ ଶଶିବାବୁ ବହୁବାର କଲିକତା ଯାଉଥିଲେ ଏବଂ କଲିକତାର ୟଙ୍ଗ୍ ଆଣ୍ଡ କମ୍ପାନୀ ସହିତ ସମ୍ପର୍କ ରକ୍ଷାକରିଥିଲେ । ଉତ୍କଳ ଟାନେରୀରେ ପ୍ରାୟ ଏକବର୍ଷ କାର୍ଯ୍ୟ କରିବା ପରେ କମ୍ପାନୀର ଅନିଶ୍ଚିତ ଭବିଷ୍ୟତ୍ ଅନୁମାନକରି ସେ କଲିକତାର ୟଙ୍ଗ ଆଣ୍ଡ କମ୍ପାନୀର ମାନେଜର ଭାବରେ ନିଯୁକ୍ତି ପାଇ ଉତ୍କଳ ଟାନେରୀ ଛାଡ଼ି ସେଠାରେ କାର୍ଯ୍ୟ କରିବାକୁ ଯାଇଥିଲେ । ଉତ୍କଳ ଟାନେରୀରେ ଏକବର୍ଷ କାର୍ଯ୍ୟ କରିବା ସମୟରେ ସେ ମଧୁବାବୁଙ୍କ ଓଡ଼ିଶାପ୍ରୀତି ଏବଂ ଓଡ଼ିଆମାନଙ୍କର ଉନ୍ନତି ପାଇଁ ତାଙ୍କର ଭାବନା ଓ କଳ୍ପନା ହୃଦୟଙ୍ଗମ କରିଥିଲେ ଏବଂ ତାଙ୍କଠାରୁ ସେ ଦିଗରେ ପ୍ରେରଣା ପାଇଥିଲେ ।

କଲିକତାରେ ୟଙ୍ଗ ଆଣ୍ଡ କମ୍ପାନୀରେ କାର୍ଯ୍ୟ କିରବା ସମୟରେ ଶଶିବାବୁ ସେ କମ୍ପାନୀ ପାଖରେ ଥିବା ଓଡ଼ିଆ ଔଷଧଦୋକାନୀ ପଦ୍ମଲୋଚନ ମହାନ୍ତିଙ୍କ ସହିତ ପରିଚିତ ହୋଇଥିଲେ । ସେତେବେଳେ କଲିକତାରେ ମ୍ୟାଲେରିଆ ରୋଗ ବିଶେଷ ଭାବରେ ବ୍ୟାପିଥିଲା । ପଦ୍ମଲୋଚନ ବାବୁଙ୍କର ଦୋକାନରେ ପ୍ରସ୍ତୁତ ଏକ ଚେରମୂଳୀ ଔଷଧ ମ୍ୟାଲେରିଆ ରୋଗ ଉପସମ କରିପାରୁଥିଲା ବୋଲି କଲିକତାରେ ବହୁଲୋକ

ଜାଣିପାରିଥିଲେ । ସେଥିପାଇଁ ସେ ଦୋକାନର ସୁନାମ ହୋଇଥିଲା ଏବଂ ସେ ଔଷଧ ବିକ୍ରିରେ ସେ ଦୋକାନରେ ଭଲ ଲାଭ ହେଉଥିଲା । ପଦ୍ମଲୋଚନବାବୁଙ୍କ ସହିତ ବନ୍ଧୁତା ହେତୁ ଶଶିବାବୁ ସେ ଔଷଧ ତିଆରିରେ ଅଂଶୀଦାର ହୋଇଥିଲେ । ସେଥିରେ ସେ କିଛି ଅର୍ଥ ବିନିଯୋଗ କରି ଲାଭାଂଶ ମଧ୍ୟ ପାଇଥିଲେ ।

କଲିକତାରେ କାର୍ଯ୍ୟ କରୁଥିବା ସମୟରେ ୧୯୦୯ ମସିହାରେ ଶଶିବାବୁଙ୍କର ଦୂର୍ବାକ୍ଷତ ଉସବ ସୋରଡ଼ାରେ ହୋଇଥିଲା । ଶଶିବାବୁଙ୍କର ପ୍ରଥମେ ୧୯୦୩ ମସିହାରେ ବଡ଼ଗଡ଼ର ମୋହନ ମିଶ୍ରଙ୍କ ଭଉଣୀ ସହିତ ବାଲ୍ୟ-ବିବାହ ହୋଇଥିଲା; ମାତ୍ର ଦୂର୍ବାକ୍ଷତ ଉସବ ପୂର୍ବରୁ ତାଙ୍କର ବାଳିକା ପତ୍ନୀଙ୍କର ମୃତ୍ୟୁ ହୋଇଥିଲା । ତାହାପରେ ସେହି ବାଳିକା ପତ୍ନୀଙ୍କ ସାନ ଭଉଣୀ ଅନ୍ନପୂର୍ଣ୍ଣା ସହିତ ତାଙ୍କର ବିବାହ ହୋଇଥିଲା । ଦୂର୍ବାକ୍ଷତ ଉସବର ଅଳ୍ପ କେତେମାସ ପରେ ତାଙ୍କର ପିତା ଲମ୍ବୋଦର ମହାପାତ୍ରଙ୍କର ଦେହାନ୍ତ ହୋଇଥିଲା । ଶଶିବାବୁ ଶୋକସନ୍ତପ୍ତ ଅବସ୍ଥାରେ ଆଉ କେତେ ମାସ ସୋରଡ଼ାରେ ରହିଯାଇଥିଲେ । ତାହାପରେ ପତ୍ନୀ ଅନ୍ନପୂର୍ଣ୍ଣା ଦେବୀଙ୍କୁ ସଙ୍ଗରେ ଧରି କଲିକତା ଯାଇଥିଲେ । ଅନ୍ନପୂର୍ଣ୍ଣା ଦେବୀ କିଛି ପାଠ ପଢ଼ିନଥିଲେ । ସେ ସମୟରେ ରକ୍ଷଣଶୀଳ ହିନ୍ଦୁ ପରିବାରମାନଙ୍କରେ ଝିଅମାନେ ମୋଟେ ପାଠ ପଢୁନଥିଲେ । ନିରକ୍ଷରା ଅନ୍ନପୂର୍ଣ୍ଣା ଦେବୀଙ୍କୁ ଶଶିବାବୁ ଯତ୍ନକରି ସାକ୍ଷର କରାଇଥିଲେ; ମାତ୍ର ସେ ଆଉ ଅଧିକ କିଛି ପାଠ ପଢ଼ିନଥିଲେ ।

୧୯୦୯-୧୦ ମସିହା ବେଳକୁ କଲିକତାରେ ପ୍ରାୟ ଦେଢ଼ଲକ୍ଷ ଓଡ଼ିଆ ବାସ-କରୁଥିଲେ । ସେମାନଙ୍କ ମଧ୍ୟରୁ ପ୍ରାୟ ଏକଲକ୍ଷ କଳକାରଖାନାମାନଙ୍କର ଶ୍ରମିକ ଥିଲେ । ଆଉ ପ୍ରାୟ ପଚାଶ ହଜାରରୁ ଅଧିକ ଲୋକ ଘରୋଇ ଚାକର, ପୂଜାରୀ,ମାଳୀ, ଦିନ ମଜୁରିଆ ଏବଂ ଛୋଟ ଛୋଟ ଖୁଚୁରା ବ୍ୟବସାୟୀରୂପେ କାର୍ଯ୍ୟ କରୁଥିଲେ । ମାତ୍ର ସମସ୍ତ ଓଡ଼ିଆ ଲୋକଙ୍କୁ ବଙ୍ଗାଳୀ ଲୋକମାନେ ହୀନ ଚକ୍ଷୁରେ ଦେଖୁଥିଲେ ଏବଂ ସେମାନଙ୍କୁ 'ଉଡ଼େ' ବୋଲି କହୁଥିଲେ । 'ଉଡ଼େ' ଶବ୍ଦର ଅର୍ଥ ସାଧାରଣତଃ ଅଳ୍ପବୁଦ୍ଧିସମ୍ପନ୍ନ, ନିରକ୍ଷର ଓଡ଼ିଆ କୁଲି ବୋଲି ବୁଝାଉଥିଲା । ସେଥିଯୋଗୁଁ କଲିକତାରେ ବାସକରୁଥିବା ମୁଷ୍ଟିମେୟ ଶିକ୍ଷିତ ଓ ସ୍ୱଚ୍ଛଳ ଓଡ଼ିଶାବାସୀ ନିଜକୁ ଓଡ଼ିଆ ବୋଲି ପରିଚୟ ଦେବାକୁ ଅନିଚ୍ଛୁକ ଥିଲେ । ୧୮୬୫ ମସିହାରେ ମଧୁସୂଦନ ଦାସ ଯେତେବେଳେ କଲିକତା ଯାଇ ଓଡ଼ିଆ କୁଲିମାନଙ୍କର ବସ୍ତିରେ ରହିଥିଲେ, ସେତେବେଳେ ସେ ସେମାନଙ୍କର ଦୁରବସ୍ଥା ଦେଖିଥିଲେ ଏବଂ ସେମାନଙ୍କର ହୀନମନ୍ୟତା ଅନୁଭବ କରିଥିଲେ । ସେ ନିରକ୍ଷର ଓଡ଼ିଆ କୁଲିମାନଙ୍କୁ ସାକ୍ଷର କରିବାକୁ ଉଦ୍ୟମ କରିଥିଲେ ।

୧୯୦୯ ଏବଂ ୧୯୧୦ ବେଳକୁ ଅନେକ ଓଡ଼ିଆ ଛାତ୍ର କଲିକତା ବିଶ୍ୱବିଦ୍ୟାଳୟରେ ବି.ଏ.,ଏମ୍. ଏ. ଏବଂ ଆଇନ୍ ଶ୍ରେଣୀମାନଙ୍କରେ ପଢୁଥିଲେ । ପଞ୍ଚାନନ୍ ଘୋଷ ଲେନ୍‌ରେ ଓଡ଼ିଆ ଛାତ୍ରମାନଙ୍କର ଗୋଟିଏ ସ୍ୱତନ୍ତ୍ର ଛାତ୍ରାବାସ ଥିଲା । ସେଥିରେ ଗୋପବନ୍ଧୁ, ନୀଳକଣ୍ଠ ଓ ଗୋଦାବରୀଶବାବୁଙ୍କ ସମେତ ବହୁ ଓଡ଼ିଆ ଛାତ୍ର ବର୍ଷାନୁକ୍ରମେ ରହିଥିଲେ । ସେମାନେ

ଓଡ଼ିଆମାନଙ୍କ ମଧ୍ୟରେ ଆତ୍ମପ୍ରତ୍ୟୟ ଜାତକରିବାକୁ ଚେଷ୍ଟାକରୁଥିଲେ ଏବଂ ନିଜକୁ ଓଡ଼ିଆ ବୋଲି ପରିଚୟ ଦେବାକୁ ପଶ୍ଚାଦ୍‌ପଦ ହେଉ ନଥିଲେ । ଗୋପବନ୍ଧୁବାବୁ ୧୯୦୬ ମସିହାରେ ବି.ଏଲ୍ ପରୀକ୍ଷା ଦେବାପାଇଁ କଲିକତାରେ କିଛିକାଳ ରହିଥିଲେ । ନୀଳକଣ୍ଠ ଦାସ ୧୯୦୯ ମସିହାରୁ ୧୯୧୧ ମସିହା ପର୍ଯ୍ୟନ୍ତ ସେଠାରେ ଏମ୍.ଏ ଏବଂ ଲ' ପଢ଼ୁଥିଲେ । ଗୋଦାବରୀଶବାବୁ ୧୯୧୦ରୁ ୧୯୧୨ ଏବଂ କୃପାସିନ୍ଧୁ ମିଶ୍ର ୧୯୧୧ ମସିହାରୁ ୧୯୧୩ ମସିହା ପର୍ଯ୍ୟନ୍ତ ସେଠାରେ ଏମ୍.ଏ. ପଢ଼ୁଥିଲେ । ଗୋପବନ୍ଧୁବାବୁ ୧୯୦୬ ମସିହାରେ ଓଡ଼ିଆ ଶ୍ରମିକମାନଙ୍କର ସାକ୍ଷରତା ନିମିତ୍ତ ଗୋଟିଏ ନୈଶ ବିଦ୍ୟାଳୟ ଆରମ୍ଭକରିଥିଲେ । ୧୯୦୯ ମସିହାରେ ସତ୍ୟବାଦୀ ବନବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ନୀଳକଣ୍ଠ, ଗୋଦାବରୀଶ ଏବଂ କୃପାସିନ୍ଧୁ ସତ୍ୟବାଦୀର ଆଦର୍ଶ ବନବିଦ୍ୟାଳୟରେ ଶିକ୍ଷାଦାନ କରିବା ନିମିତ୍ତ ଗୋପବନ୍ଧୁବାବୁଙ୍କଠାରୁ ପ୍ରେରଣା ପାଇଥିଲେ । ସେଥିପାଇଁ ସେମାନେ ଉଚ୍ଚଶିକ୍ଷା ଲାଭ କରିବା ନିମିତ୍ତ କଲିକତାରେ ଏମ୍.ଏ. ପଢ଼ିବାକୁ ଯାଇଥିଲେ ।

ଗୋପବନ୍ଧୁବାବୁ କଲିକତାରେ ଓଡ଼ିଆମାନଙ୍କର ଗୋଟିଏ ସଂଗଠନ ପ୍ରତିଷ୍ଠା କରିଥିଲେ । ଓଡ଼ିଆମାନଙ୍କ ମନରୁ ହୀନମନ୍ୟତା ଦୂରକରିବା, ସେମାନଙ୍କର ଗୌରବମୟ ଇତିହାସ, ଭାଷା ଓ ସାହିତ୍ୟ ଅଛି ବୋଲି ବଙ୍ଗାଳୀମାନଙ୍କୁ ଜଣାଇଦେବା ଏବଂ ସେମାନଙ୍କ ମଧ୍ୟରେ ସ୍ୱାଭିମାନ ଜାଗ୍ରତ କରିବା ଏହି ସଂଗଠନର ଉଦ୍ଦେଶ୍ୟ ଥିଲା । ଗୋପବନ୍ଧୁବାବୁ କଲିକତା ଛାଡ଼ିବା ପରେ ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ ଏବଂ ଅନ୍ୟ ଓଡ଼ିଆ ଛାତ୍ରମାନେ ଏ ସଂଗଠନର ପରିଚାଳନାରେ ସାହାଯ୍ୟ କରୁଥିଲେ । ମଝିରେ ମଝିରେ ଗୋପବନ୍ଧୁବାବୁ ମଧ୍ୟ କଲିକତା ଯାଉଥିଲେ ଏବଂ ଏ ସମସ୍ତଙ୍କର ଉଦ୍ୟମରେ କଲିକତାରେ ଓଡ଼ିଆମାନଙ୍କର ଗୋଟିଏ ବଳିଷ୍ଠ ସଂଗଠନ ଗଢ଼ିଉଠିଥିଲା । ପଦ୍ମଲୋଚନବାବୁ ଓ ଶଶିବାବୁଙ୍କ ଦୋକାନର ମାଲେରିଆ ଔଷଧ ଓଡ଼ିଆମାନଙ୍କ ମଧ୍ୟରେ ବହୁଳ ଭାବରେ ବ୍ୟବହୃତ ହେଉଥିଲା ଏବଂ ଶଶିବାବୁଙ୍କର ଓଡ଼ିଆ ବସ୍ତିରେ ବିଶେଷ ପ୍ରଭାବ ଥିଲା । ନୀଳକଣ୍ଠବାବୁ ଓ ଗୋଦାବରୀଶବାବୁ ପ୍ରଭୃତି ଓଡ଼ିଆ ସଂଗଠନର ପରିଚାଳନାରେ ତାଙ୍କ ସହିତ ସମ୍ପର୍କ ରଖିଥିଲେ । ସେ ଗୋପବନ୍ଧୁବାବୁ, ନୀଳକଣ୍ଠବାବୁ ଏବଂ ଗୋଦାବରୀଶବାବୁ ପ୍ରଭୃତିଙ୍କ ସହିତ ଭଲଭାବରେ ପରିଚିତ ହୋଇଥିଲେ । ସେମାନେ ଓଡ଼ିଆ ଜାତିର ନବଜାଗରଣ ପାଇଁ ସତ୍ୟବାଦୀରେ ଯେଉଁ ଆଦର୍ଶ ସ୍କୁଲ ଚଳାଉଥିଲେ, ଓଡ଼ିଆ ପିଲାଙ୍କ ମନରେ ଯେପରି ଉନ୍ମାଦନା ଜାଗ୍ରତ କରୁଥିଲେ, ସେମାନଙ୍କୁ ଶୃଙ୍ଖଳିତ ଭାବରେ ଯେପରି ସମାଜସେବା କରିବାକୁ ଶିକ୍ଷାଦେଉଥିଲେ, ଶଶିବାବୁ ସେହି ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ ।

୧୯୧୧ ମସିହାରେ ନୀଳକଣ୍ଠବାବୁ ଏବଂ ୧୯୧୨ ମସିହାରେ ଗୋଦାବରୀଶବାବୁ କଲିକତାରେ ଏମ୍.ଏ. ପାସ୍ କରି ସତ୍ୟବାଦୀ ସ୍କୁଲରେ ଶିକ୍ଷକତା କରିବାକୁ ଏବଂ ସେ ଅଞ୍ଚଳରେ ସମାଜସେବା ଓ ସମାଜ-ସଂସ୍କାର କାର୍ଯ୍ୟ କରିବା ପାଇଁ ସତ୍ୟବାଦୀକୁ ଫେରି-ଆସିଲେ । କୃପାସିନ୍ଧୁବାବୁ ମଧ୍ୟ ୧୯୧୩ ମସିହାରେ କଲିକତା ଛାଡ଼ି ସତ୍ୟବାଦୀ ଆସିଲେ ।

ଏମାନେ ସମସ୍ତେ ପୁରୀ ଜିଲ୍ଲାର ଲୋକ ଥିଲେ ଏବଂ ପୁରୀ ଜିଲ୍ଲାରେ ସମାଜସେବା ଆରମ୍ଭ କରି ସମଗ୍ର ଓଡ଼ିଶାରେ ନବଜାଗରଣ ପାଇଁ ଉଦ୍ୟାମ କରୁଥିଲେ । ଶଶିବାବୁ ସେହିମାନଙ୍କ କାର୍ଯ୍ୟରେ ଅନୁପ୍ରାଣିତ ହୋଇ ନିଜ ଅଞ୍ଚଳ ଗଞ୍ଜାମ ଜିଲ୍ଲାରେ ସମାଜସେବା କରି ଓଡ଼ିଆ ମାନଙ୍କର ଉନ୍ନତି କରିବାକୁ ଇଚ୍ଛା କଲେ । ସେହି ଉଦ୍ଦେଶ୍ୟରେ ୧୯୧୨ ମସିହା ଶେଷରେ ସେ କଲିକତା ଛାଡ଼ି ଗଞ୍ଜାମର ଓଡ଼ିଆମାନଙ୍କ ମଧ୍ୟରେ ସମାଜସେବା କରିବା ପାଇଁ ବ୍ରହ୍ମପୁର ସହରକୁ ଫେରିଆସିଲେ । ଗଞ୍ଜାମର ଓଡ଼ିଆମାନଙ୍କର ସେବାପାଇଁ ନିର୍ଦ୍ଦିଷ୍ଟ ଭାବରେ ସେ କ'ଣ କରିବେ ଏବଂ କେଉଁ ଅଞ୍ଚଳରେ କାର୍ଯ୍ୟ ଆରମ୍ଭ କରିବେ, ତାହା ସେ ସ୍ଥିର କରିନଥିଲେ । ପରିସ୍ଥିତି ଅନୁସାରେ କାର୍ଯ୍ୟ କରିବେ ବୋଲି ସେ ଭାବିଥିଲେ ।

ଗଞ୍ଜାମ ଜିଲ୍ଲା, ଫୁଲବାଣୀ, କନ୍ଧମାଳ ଏବଂ ଜୟପୁର ଏଜେନ୍ସି ଅଞ୍ଚଳମାନ ସେତେବେଳେ ମାନ୍ଦ୍ରାଜ ପ୍ରେସିଡ଼େନ୍ସି ଅନ୍ତର୍ଭୁକ୍ତ ଥିଲା । କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ଏବଂ ଅନଗୁଳ ଜିଲ୍ଲାମାନଙ୍କ ସମେତ ଓଡ଼ିଶା ଡିଭିଜନ ୧୯୧୨ ମସିହାରେ ବଙ୍ଗ ପ୍ରେସିଡ଼େନ୍ସିରୁ ବିହାର-ଓଡ଼ିଶା ପ୍ରଦେଶର ଅନ୍ତର୍ଭୁକ୍ତ ହୋଇଥିଲା । ଓଡ଼ିଶା ଡିଭିଜନରେ ବଙ୍ଗାଳୀମାନଙ୍କର ଯେପରି ପ୍ରାଦୁର୍ଭାବ ଥିଲା ଏବଂ ଓଡ଼ିଆମାନେ ଯେପରି ଅବହେଳିତ ହେଉଥିଲେ, ତାହାଠାରୁ ବହୁ ଗୁଣ ଅଧିକ ମାନ୍ଦ୍ରାଜ ପ୍ରେସିଡ଼େନ୍ସିରେ ଅନ୍ତର୍ଭୁକ୍ତ ଗଞ୍ଜାମ ଓ ଜୟପୁର ଅଞ୍ଚଳର ଓଡ଼ିଆମାନେ ଅବହେଳିତ ହେଉଥିଲେ । ସମଗ୍ର ଗଞ୍ଜାମ ଜିଲ୍ଲା ଓ ଜୟପୁର ଏଜେନ୍ସି ଅଞ୍ଚଳରେ ସରକାରୀ ଅଫିସ୍ ଓ କଚେରିମାନଙ୍କରେ ଓଡ଼ିଆ ଭାଷା ପ୍ରଚଳିତ ନଥିଲା । ସ୍କୁଲ-କଲେଜରେ ଓଡ଼ିଆ ଭାଷା ଶିକ୍ଷା ଦିଆଯାଉନଥିଲା; ସେ ସବୁରେ ତେଲଗୁ ଭାଷା ଚଳୁଥିଲା । ସରକାରୀ ଅଫିସ ଓ କଚେରୀ ମାନଙ୍କରେ ସବୁ କର୍ମଚାରୀ ତେଲଗୁ ବା ତାମିଲ୍‌ଭାଷୀ ଥିଲେ । ଗଞ୍ଜାମ ଓ ଜୟପୁର ଜିଲ୍ଲାର ଜମିଦାରିମାନଙ୍କରେ ମଧ ଅଧିକାଂଶ କର୍ମଚାରୀ ତେଲଗୁ ଲୋକ ଥିଲେ । ଗଞ୍ଜାମ ଜିଲ୍ଲାର ସର୍ବପ୍ରଧାନ ସହର ବ୍ରହ୍ମପୁରରେ ମଧ୍ୟ ଅଧିକାଂଶ ବ୍ୟବସାୟୀ ତେଲଗୁ ଲୋକ ଥିଲେ । ବ୍ରହ୍ମପୁର କଚେରିରେ ମାତ୍ର ଜଣେ ଦୁଇଜଣ ଓଡ଼ିଆ ଓକିଲ ଥିଲେ, ସେମାନଙ୍କର କିଛି ପ୍ରଭାବ ନଥିଲା । ବ୍ରହ୍ମପୁର ମ୍ୟୁନିସିପାଲିଟିରେ ନିର୍ବାଚିତ ଓଡ଼ିଆ ସଭ୍ୟ ନଥିଲେ । ଗଞ୍ଜାମ ଜିଲ୍ଲା ବୋର୍ଡ଼ରେ ଧରାକୋଟ ରାଜା ମଦନ-ମୋହନ ସିଂହ ଦେଓ ଏକମାତ୍ର ନିର୍ବାଚିତ ସଭ୍ୟ ଥିଲେ । ଖଲିକୋଟ କଲେଜର ପରିଚାଳନା ପରିଷଦରେ କେହି ଓଡ଼ିଆ ସଭ୍ୟ ନଥିଲେ ଏବଂ ଶିକ୍ଷକମାନେ ସମସ୍ତେ ଅଣଓଡ଼ିଆ ଥିଲେ । ଆନ୍ଧ୍ର ଅଞ୍ଚଳର ପ୍ରଭାବଶାଳୀ କମା ବ୍ରାହ୍ମଣମାନେ ମାନ୍ଦ୍ରାଜ ସରକାରଙ୍କଠାରୁ ଗଞ୍ଜାମ ଜିଲ୍ଲାର ହଜାର ହଜାର ଏକର ଚାଷଜମି ନିଜ ନାମରେ ପଟ୍ଟା କରାଇନେଇଥିଲେ ଏବଂ ଋଷିକୁଲ୍ୟା ନଦୀର ଉତ୍ତର ପାର୍ଶ୍ୱରେ ମଧ୍ୟ କେତେକ ଜମିଦାରି ସୃଷ୍ଟି କରିଥିଲେ । ମୂଳତଃ ଗଞ୍ଜାମ ଜିଲ୍ଲାରେ ଏବଂ ଏହାର ମୁଖ୍ୟ ସହରମାନଙ୍କରେ ଓଡ଼ିଆମାନଙ୍କର କୌଣସି ପ୍ରାଧାନ୍ୟ ନଥିଲା । ସଂଖ୍ୟାଲଘୁ ତେଲଗୁ ଲୋକମାନେ ଏ ଜିଲ୍ଲାର ଶିକ୍ଷା, ସଂସ୍କୃତି, ଅର୍ଥନୀତି ଏବଂ ସାମାଜିକ ଚାଲିଚଳଣି ନିୟନ୍ତ୍ରିତ କରୁଥିଲେ; ସଂଖ୍ୟାଧିକ ଓଡ଼ିଆମାନେ ସବୁକ୍ଷେତ୍ରରେ ଅବହେଳିତ ହେଉଥିଲେ ।

ଶଶିବାବୁ କଲିକତାରୁ ବ୍ରହ୍ମପୁରକୁ ଆସିବାବେଳେ ଗଞ୍ଜାମ ଜିଲ୍ଲାର ଏବଂ ବ୍ରହ୍ମପୁର ସହରର ଏହିପରି ଅବସ୍ଥା ଥିଲା । ସେ ପ୍ରଥମେ ବ୍ରହ୍ମପୁରଠାରେ ଗଞ୍ଜାମର ଓଡ଼ିଆ ନେତା ହରିହର ପଣ୍ଡା, ଦିଗପହଣ୍ଡିର ସବ୍‌ରେଜିଷ୍ଟ୍ରାର ଶ୍ରୀବସ୍ତ ପଣ୍ଡା ଏବଂ ବଡ଼ଖେମୁଣ୍ଡିର ରାଜ ଦରବାରରେ ଥିବା ଜାତୀୟତାବାଦୀ ସାମ୍ବାଦିକ ନୀଳମଣି ବିଦ୍ୟାରତ୍ନଙ୍କ ସହିତ ସାକ୍ଷାତ କରିଥିଲେ । ଏମାନେ ଶଶିବାବୁଙ୍କୁ ବ୍ରହ୍ମପୁରରୁ ଗୋଟିଏ ଓଡ଼ିଆ ସାପ୍ତାହିକ ପତ୍ରିକା ପ୍ରକାଶ କରିବାକୁ ପରାମର୍ଶ ଦେଇଥିଲେ । ଏ କ୍ଷେତ୍ରରେ ନୀଳମଣି ବିଦ୍ୟାରତ୍ନଙ୍କର ପ୍ରଭୂତ ଅଭିଜ୍ଞତା ଥିଲା । ବିଦ୍ୟାରତ୍ନ ୧୮୮୯ ମସିହାରୁ ୧୯୦୨ ମସିହା ପର୍ଯ୍ୟନ୍ତ ବାମଣ୍ଡାରେ ପ୍ରସିଦ୍ଧ 'ସମ୍ବଲପୁର ହିତୈଷିଣୀ' ସମ୍ବାଦପତ୍ର ସଂପାଦନା କରୁଥିଲେ । ତାଙ୍କ ସମ୍ପାଦନାରେ ସମ୍ବଲପୁର ହିତୈଷିଣୀ ଉନବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ପଶ୍ଚିମ-ଓଡ଼ିଶାରେ ଏବଂ ସମସ୍ତ ପ୍ରାକୃତିକ ଉତ୍କଳରେ ଓଡ଼ିଆ ଭାଷା ଓ ସାହିତ୍ୟର ସ୍ୱାର୍ଥରକ୍ଷା ଓ ଉନ୍ନତି ନିମିତ୍ତ ସଂଗ୍ରାମ କରୁଥିଲା । ତାଙ୍କର ଏହି କାର୍ଯ୍ୟରେ ବିଦ୍ୟାରତ୍ନ ସେହି ସମୟରେ ଓଡ଼ିଶାର ସବୁ ପ୍ରଖ୍ୟାତ କବି, ଲେଖକ ଓ ସାହିତ୍ୟିକମାନଙ୍କର ସହଯୋଗ ଏବଂ ସହାୟତା ଲାଭକରିଥିଲେ । ତାହାପରେ ସେ ୧୯୦୨ ମସିହାରୁ ୧୯୦୮ ମସିହା ପର୍ଯ୍ୟନ୍ତ ଖଲ୍ଲିକୋଟର ରାଜା ହରିହର ମର୍ଦ୍ଦରାଜଙ୍କ ପୃଷ୍ଠପୋଷକତାରେ ରମ୍ଭାଠାରେ 'ପ୍ରଜାବନ୍ଧୁ' ସାପ୍ତାହିକ ପତ୍ରିକା ସଂପାଦନା କରୁଥିଲେ । ବିଭିନ୍ନ ପ୍ରଦେଶରେ ବିଚ୍ଛିନ୍ନ ଭାବରେ ବାସକରୁଥିବା ଓଡ଼ିଆମାନଙ୍କର ଏକତ୍ରୀକରଣ ଏବଂ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମିତ୍ତ ଜନଜାଗରଣ ସୃଷ୍ଟିକରିବା 'ପ୍ରଜାବନ୍ଧୁ'ର ମୁଖ୍ୟ ଆଭିମୁଖ୍ୟ ଥିଲା । ବିଦ୍ୟାରତ୍ନଙ୍କ ଉଦ୍ୟମରେ ୧୯୦୩ ମସିହାରେ ରମ୍ଭାଠାରେ ଗଞ୍ଜାମ ଜାତୀୟ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ସେହି ସମ୍ମିଳନୀରେ ବୃହତ୍ ଉତ୍କଳ ସମ୍ମିଳନୀର ପରିକଳ୍ପନା କରାଯାଇଥିଲା । ଏବଂ ୧୯୦୩ ମସିହା ଡିସେମ୍ବର ମାସରେ ମଧୁବାବୁଙ୍କ ଉଦ୍ୟମରେ କଟକଠାରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ୧୯୦୮ ମସିହାରେ ବିଦ୍ୟାରତ୍ନ ରମ୍ଭା ଛାଡ଼ି ବଡ଼ଖେମୁଣ୍ଡି ଆସିଥିଲେ ଏବଂ ସେଠାରେ ରାଜା କୃପାମୟ ଦେବଙ୍କ ପୃଷ୍ଠପୋଷକତାରେ 'ଗଞ୍ଜାମ ଗୁଣଦର୍ପଣ' ନାମରେ ଏକ ସାପ୍ତାହିକ ପତ୍ରିକା ସମ୍ପାଦନା କରୁଥିଲେ । ବିଦ୍ୟାରତ୍ନ ସର୍ବଦା ଗଡ଼ଜାତ ରାଜା ଏବଂ ବ୍ରିଟିଶ ଓଡ଼ିଶାର ଜମିଦାରମାନଙ୍କର ପୃଷ୍ଠପୋଷକତାରେ ପତ୍ରିକା ସମ୍ପାଦନା କରୁଥିବାରୁ ବ୍ରିଟିଶ ସରକାରଙ୍କ କାର୍ଯ୍ୟକଳାପ ଉପରେ ତାଙ୍କର ସ୍ୱାଧୀନ ମତ ପ୍ରକାଶ କରିପାରୁନଥିଲେ । କାରଣ ତାଙ୍କର ପୃଷ୍ଠପୋଷକ ରାଜା ଜମିଦାରମାନେ ନିଜର ସ୍ୱାର୍ଥରକ୍ଷା ପାଇଁ ବ୍ରିଟିଶ ସରକାରଙ୍କର ନୀତି ଓ କାର୍ଯ୍ୟର ସମାଲୋଚନା କରି ତାଙ୍କର ବିରାଗଭାଜନ ହେବାକୁ ଇଚ୍ଛା କରୁନଥିଲେ । ସେଥିପାଇଁ ଜନସାଧାରଣଙ୍କ ନିୟନ୍ତ୍ରଣରେ ଗୋଟିଏ ସ୍ୱାଧୀନ ଓଡ଼ିଆ ସାପ୍ତାହିକ ପତ୍ରିକା ପ୍ରକାଶନଦ୍ୱାରା ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷା ହୋଇପାରିବ ବୋଲି ବିଦ୍ୟାରତ୍ନଙ୍କର ଦୃଢ଼ ବିଶ୍ୱାସ ଥିଲା । ତେଣୁ ସାଧାରଣ ଲୋକଙ୍କ ନିୟନ୍ତ୍ରଣରେ ବ୍ରହ୍ମପୁରଠାରୁ ଓଡ଼ିଆ ଜାତୀୟ ଆଭିମୁଖ୍ୟ ସହିତ ଗୋଟିଏ ସାପ୍ତାହିକ ଓଡ଼ିଆ ପତ୍ରିକା ସମ୍ପାଦନା ପାଇଁ ସେ ଶିଶିଭୂଷଣ ରଥଙ୍କୁ ପରାମର୍ଶ ଦେଲେ । ଶଶିବାବୁ ଏହି କାର୍ଯ୍ୟ କରିପାରିବେ ବୋଲି ବିଦ୍ୟାରତ୍ନଙ୍କର ବିଶ୍ୱାସ ଥିଲା ।

ଶଶିବାବୁ ସେ କାର୍ଯ୍ୟ କରିବାକୁ ରାଜିହେଲେ । ତାଙ୍କର ଜନ୍ମଦାତା ପିତା ଲମ୍ବୋଦର ମହାପାତ୍ର ଓଡ଼ିଆ ଅକ୍ଷର କମ୍ପୋଜିସନ କାର୍ଯ୍ୟ କରିବା ପାଇଁ ମାନ୍ଦ୍ରାଜ ସରକାରଙ୍କଦ୍ୱାରା ନିଯୁକ୍ତ ହୋଇଥିଲେ । ଶଶିବାବୁଙ୍କର ପ୍ରେସ୍ କାମ ଏବଂ ପୁସ୍ତକ ଓ ପତ୍ରିକା ମୁଦ୍ରଣ ବିଷୟରେ କିଛି ଧାରଣା ଥିଲା । ଉତ୍କଳ ଟାନେରୀରେ କାର୍ଯ୍ୟ କରୁଥିବା ସମୟରେ ଓଡ଼ିଆମାନେ ବିଭିନ୍ନ ପ୍ରଦେଶରେ ବିକ୍ଷିପ୍ତ ଭାବରେ ରହିବା ହେତୁ ସେମାନଙ୍କର ଅସୁବିଧା, ସେମାନଙ୍କର ଏକତ୍ରୀକରଣ, ଓଡ଼ିଆ ଭାଷାରକ୍ଷା ଏବଂ ଓଡ଼ିଆମାନଙ୍କର ଆର୍ଥିକ ଉନ୍ନତି ବିଷୟରେ ଜନଜାଗରଣର ଆବଶ୍ୟକତା ବିଷୟରେ ସେ ମଧୁବାବୁଙ୍କଠାରୁ ଭଲଭାବରେ ବୁଝିଥିଲେ । କଲିକତାରେ ଥିବା ସମୟରେ ସେ ଓଡ଼ିଆ ଶ୍ରମିକମାନଙ୍କର ହୀନମାନ ଅବସ୍ଥା ନିଜେ ଅନୁଭବ କରିଥିଲେ ଏବଂ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶବାବୁ ପ୍ରଭୃତିଙ୍କର ଓଡ଼ିଆମାନଙ୍କର ହୀନମନ୍ୟତା ଦୂରକରିବା, ଓଡ଼ିଆ ଶ୍ରମିକମାନଙ୍କୁ ସାକ୍ଷର କରିବା ଏବଂ ସେମାନଙ୍କର ଆର୍ଥିକ ଓ ସାମାଜିକ ଉନ୍ନତି ପାଇଁ ବିଭିନ୍ନ କାର୍ଯ୍ୟରେ ସେ ଅଂଶୀଦାର ଥିଲେ । ସୁତରାଂ ଗୋଟିଏ ସ୍ୱାଧୀନ ଓଡ଼ିଆ ପତ୍ରିକା ସମ୍ପାଦନ କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ସେ ମଧୁସୂଦନ, ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ଏବଂ ନୀଳମଣି ବିଦ୍ୟାରତ୍ନ ପ୍ରଭୃତିଙ୍କ ସମ୍ପର୍କରେ ଆସି ଏବଂ ଗଞ୍ଜାମରେ ଓଡ଼ିଆମାନଙ୍କର ଅବସ୍ଥା ଦେଖି ସେ ଓଡ଼ିଆ ଜାତୀୟତା ଭାବରେ ଉଦ୍‌ବୁଦ୍ଧ ହୋଇଥିଲେ ଏବଂ ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷା ପାଇଁ ନିଃସ୍ୱାର୍ଥପର ଭାବରେ କାର୍ଯ୍ୟ କରିବାର ଆବଶ୍ୟକତା ଉପଲବ୍ଧି କରିଥିଲେ । ତାଙ୍କ ହୃଦୟରେ ଜାତୀୟତାଭାବ ଜାଗ୍ରତ ହୋଇଥିଲା ଏବଂ ନିଃସ୍ୱାର୍ଥପର ଭାବରେ ଓଡ଼ିଆ ଜାତିର ଗୌରବର ପୁନରୁଦ୍ଧାର ଏବଂ ସେମାନଙ୍କର ସ୍ୱାର୍ଥରକ୍ଷା କରିବାକୁ ସେ ସ୍ଥିରକଲେ ।

ବ୍ରହ୍ମପୁରଠାରୁ ଗୋଟିଏ ସ୍ୱାଧୀନ ମତବାଦୀ ସାପ୍ତାହିକ ଓଡ଼ିଆ ପତ୍ରିକା ପ୍ରକାଶ କରିବା ପାଇଁ ସେ ସ୍ଥିରକଲେ । ମାତ୍ର ସେଥିପାଇଁ ତାଙ୍କ ପାଖରେ କିଛି ଅର୍ଥ ନ ଥିଲା । ସେ ନିଜର ବନ୍ଧୁବାନ୍ଧବଙ୍କଠାରୁ ଅଳ୍ପ କିଛି ଟଙ୍କା ସଂଗ୍ରହ କଲେ । ନୀଳମଣି ବିଦ୍ୟାରତ୍ନ ବଡ଼- ଖେମୁଣ୍ଡିର ରାଜା କୃପାମୟ ଦେବଙ୍କଠାରୁ ପାଞ୍ଚଶହ ଟଙ୍କା ଋଣ ବନ୍ଦୋବସ୍ତ କରିଦେଲେ । ଋଣ ପ୍ରଦାନ ସମୟରେ କୃପାମୟ ଦେବଙ୍କ ଅଧ୍ୟକ୍ଷତାରେ ଗୋଟିଏ ସଭା ହୋଇଥିଲା । ସେଥିରେ ଶଶିବାବୁ ପ୍ରସ୍ତାବିତ ପତ୍ରିକାର ଆଭିମୁଖ୍ୟର ସୂଚନା ଦେଇଥିଲେ । ଏହି ସଭାର ଅଳ୍ପଦିନ ପୂର୍ବରୁ ୧୯୧୩ ମସିହା ଫେବୃୟାରୀ ମାସରେ ତାଙ୍କର ଗୋଟିଏ ଝିଅ ଜନ୍ମ ହୋଇଥିଲା । ଶଶିବାବୁ ତାହାର ନାମ 'ଆଶା' ଦେଇଥିଲେ । ଋଣଗ୍ରହଣ ସଭାରେ ପ୍ରସ୍ତାବିତ ପତ୍ରିକାର ନାମ 'ଆଶା' ହେବ ବୋଲି ସେ ଘୋଷଣାକରିଥିଲେ । ଏହା ପରେ ଅଳ୍ପକାଳ ପ୍ରାରମ୍ଭିକ ପ୍ରସ୍ତୁତି ପରେ, ୧୯୧୩ ମସିହା ଅପ୍ରେଲ ମାସ ୧୩ ତାରିଖ ମହାବିଷୁବ ସଂକ୍ରାନ୍ତି ଦିନ ସାପ୍ତାହିକ 'ଆଶା'ର ପ୍ରକାଶନ ଆରମ୍ଭ ହୋଇଥିଲା । ଏହି ଦିନଠାରୁ ଶଶିବାବୁଙ୍କର କର୍ମଜୀବନର ପ୍ରଥମ ଭାଗ ଶେଷହୋଇ ଦ୍ୱିତୀୟ ଭାଗ ଆରମ୍ଭ ହେଲା ।

୧୯୦୫ ମସିହାଠାରୁ ୧୯୧୩ ମସିହା ପର୍ଯ୍ୟନ୍ତ ପ୍ରାୟ ଆଠବର୍ଷ ସେ ବମ୍ବେ ଓ କଲିକତାରେ ନିଜର ଜୀବିକା ଅର୍ଜନ ପାଇଁ କାର୍ଯ୍ୟ କରିଥିଲେ । ୧୯୧୩ମସିହାରେ 'ଆଶା'

ପ୍ରକାଶନ ଆରମ୍ଭ ଦିନଠାରୁ ସେ ସର୍ବସାଧାରଣ କାର୍ଯ୍ୟକ୍ଷେତ୍ରରେ ପ୍ରବେଶକଲେ । ଜୀବନର ଶେଷ ପର୍ଯ୍ୟନ୍ତ ସେ ସାପ୍ତାହିକ ଏବଂ ପରେ ଦୈନିକ ଆଶାର ସମ୍ପାଦକରୂପେ କାର୍ଯ୍ୟ କରିଥିଲେ । ସେଥି ସଙ୍ଗେ ସଙ୍ଗେ 'ନିଉ ଓଡ଼ିଶା', 'ଇଷ୍ଟ କୋଷ୍ଟ' ପ୍ରଭୃତି ଇଂରାଜୀ ସମ୍ବାଦପତ୍ର ଏବଂ ମାସିକ 'ପ୍ରଦୀପ' ସାହିତ୍ୟ ପତ୍ରିକା ସମ୍ପାଦନା କରୁଥିଲେ । ପ୍ରଧାନତଃ ସମ୍ବାଦପତ୍ର ସଂପାଦନା ମାଧ୍ୟମରେ ସେ ଓଡ଼ିଆମାନଙ୍କର ଏକତ୍ରୀକରଣ, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଏବଂ ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷା ଓ ସର୍ବବିଧ ଉନ୍ନତିପାଇଁ ଜୀବନଯାକ ସଂଗ୍ରାମ କରିଥିଲେ । ଜନସାଧାରଣଙ୍କର ହିତ ସାଧନ ପାଇଁ ସେ ବ୍ରହ୍ମପୁର ମ୍ୟୁନିସିପାଲିଟିର ଉପାଧ୍ୟକ୍ଷ ହୋଇଥିଲେ ଏବଂ ମାନ୍ଦ୍ରାଜ ବିଧାନ ପରିଷଦର ସଭ୍ୟ ହୋଇଥିଲେ । ମାତ୍ର ସମ୍ବାଦପତ୍ର ପ୍ରକାଶନ ମାଧ୍ୟମରେ ଦେଶ ଓ ଜାତିପାଇଁ କାର୍ଯ୍ୟ କରିବା ଏବଂ ସମାଜର ମଙ୍ଗଳ କରିବା ତାଙ୍କ ଜୀବନର ବ୍ରତ ଥିଲା ।

## କର୍ମ ଜୀବନର ଦ୍ୱିତୀୟ ଭାଗ –
## ସାପ୍ତାହିକ ଓ ଦୈନିକ ଆଶାର ସଂପାଦନା

ଆଶା ପ୍ରକାଶନ ଏକ କ୍ଷୁଦ୍ର ସଂସ୍ଥାରୂପେ ପ୍ରଥମେ ଆରମ୍ଭ ହୋଇଥିଲା । ବ୍ରହ୍ମପୁର ସହରର ଭେଙ୍କଟେଶ୍ୱର ମନ୍ଦିର ପାର୍ଶ୍ୱରେ ଗୋଟିଏ ଭଡ଼ା ଟାଳଘରେ ଆଶା ପ୍ରେସ୍ ପ୍ରଥମେ ସ୍ଥାପିତ ହୋଇଥିଲା । ମୁଦ୍ରଣ କାର୍ଯ୍ୟ ପାଇଁ ଶଶିବାବୁ ଅଳ୍ପ ମୂଲ୍ୟରେ ବେଲଗୁଣ୍ଠାରୁ ଗୋଟିଏ ପୁରୁଣା ହାଣ୍ଡପ୍ରେସ୍ କିଣିଥିଲେ । ଅନେକ ଦିନୁ ଅଚଳ ହୋଇଥିବା ଏହି ପ୍ରେସକୁ କାର୍ଯ୍ୟକାରୀ କରିବାକୁ ତାଙ୍କୁ ପ୍ରଥମେ ବହୁ ପରିଶ୍ରମ କରିବାକୁ ପଡ଼ିଥିଲା । ଆଶା ପ୍ରେସ୍ ବ୍ରହ୍ମପୁରର ପ୍ରଥମ ମୁଦ୍ରଣାଳୟ ଥିଲା । ପ୍ରଥମେ ଆଶାର କଳେବର ଡିମାଇ ଆଠ ସାଇଜର ଆଠ ପୃଷ୍ଠା ଥିଲା । ପ୍ରଥମରୁ ଗଞ୍ଜାମର ଓଡିଆମାନେ ଆଶାର ପ୍ରକାଶନରେ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ, କାରଣ ତେଲଗୁମାନଙ୍କଦ୍ୱାରା ନିଷ୍ପେସିତ ଓଡିଆମାନଙ୍କର ଏହା ମୁଖପତ୍ର ହୋଇଥିଲା । ପ୍ରକାଶନର ପ୍ରଥମ ବର୍ଷ ୧୯୧୩ ମସିହାରେ ଏହାର ମୁଦ୍ରଣ ସଂଖ୍ୟା ୩୦୦୦ ଥିବାବେଳେ, ପରବର୍ଷ ୧୯୧୪ ମସିହାରେ ଏହା ସାତ ହଜାର ହୋଇଥିଲା । ଆଶା ପଢିବାକୁ ଲୋକମାନଙ୍କର ଆଗ୍ରହ ଦେଖି ଶଶିବାବୁ ଅତ୍ୟନ୍ତ ଉତ୍ସାହିତ ହୋଇଥିଲେ ।

ପତ୍ରିକାର ମୂଲ୍ୟ ଅଳ୍ପ ଥିବାରୁ ଆଶା ପ୍ରକାଶନର ଆର୍ଥିକ ଅନଟନ ବରାବର ଲାଗି-ରହିଥିଲା । ପତ୍ରିକାର ନିୟମିତ ପ୍ରକାଶନ ଏବଂ ଲୋକମାନଙ୍କର ଆଗ୍ରହ ଦେଖି ଧରାକୋଟ; ଚିକିଟି ଓ ସୁରଙ୍ଗୀ ପ୍ରଭୃତି ଜମିଦାରିର ରାଜାମାନେ ପତ୍ରିକାକୁ ସାମୟିକ ଭାବରେ ସାହାଯ୍ୟ ଦେଉଥିଲେ । ବଡ଼ଖେମୁଣ୍ଡିର ରାଜା କୃପାମୟ ଦେବ ପ୍ରଥମେ ଯେଉଁ ପାଞ୍ଚଶହ ଟଙ୍କା ଋଣ ଦେଇଥିଲେ, ପରେ ସେ ତାହାକୁ ପ୍ରେସକୁ ଦାନ ବୋଲି ଘୋଷଣା କରିଥିଲେ । ସେମାନଙ୍କ ବ୍ୟତୀତ ନିମଖଣ୍ଡିର ବ୍ୟବସାୟୀ ପରମାନନ୍ଦ ସାହୁଙ୍କ ସମେତ ବହୁ ବଦାନ୍ୟ ବ୍ୟକ୍ତି ମଧ୍ୟ ଆଶା ପ୍ରେସ୍‌କୁ ସାହାଯ୍ୟ ଦେଉଥିଲେ ।

ଶଶିବାବୁ କଲିକତାରେ ଥିବା ସମୟରେ ସତ୍ୟବାଦୀ ଗୋଷ୍ଠୀ ସହିତ ଭଲଭାବରେ ପରିଚିତ ଥିଲେ । ସାପ୍ତାହିକ ଆଶା ପ୍ରକାଶନର ଆରମ୍ଭରୁ ସେ ସେମାନଙ୍କ ସହିତ

ଯୋଗାଯୋଗ ସ୍ଥାପନ କଲେ । ଶଶିବାବୁ ସତ୍ୟବାଦୀର ଚିନ୍ତାଧାରାରେ ଆନୁପ୍ରାଣିତ ହୋଇଥିଲେ ଏବଂ ସାପ୍ତାହିକ ଆଶା ଆନୁଷ୍ଠାନିକ ଭାବରେ ସତ୍ୟବାଦୀ ଚିନ୍ତାଧାରାର ପ୍ରଥମ ପ୍ରକାଶମାଧ୍ୟମ ହୋଇଥିଲା । ସେତେବେଳେ 'ସତ୍ୟବାଦୀ' ମାସିକ ପତ୍ରିକା କିମ୍ବା ସାପ୍ତାହିକ ସମାଜର ପ୍ରକାଶନ ଆରମ୍ଭ ହୋଇନଥିଲା । ସାପ୍ତାହିକ ଆଶା ଏବଂ ସତ୍ୟବାଦୀଗୋଷ୍ଠୀ ପରସ୍ପର ନିର୍ଭରଶୀଳ ହୋଇପଡ଼ିଥିଲେ । ପ୍ରଥମେ ଗୋପବନ୍ଧୁବାବୁ ପ୍ରତି ସପ୍ତାହରେ ଆଶାର ଅଗ୍ରଲେଖ ଏବଂ ସଂପାଦକୀୟ ଆଲୋଚନା ଲେଖୁଥିଲେ । ନୀଳକଣ୍ଠ ଦାସ ଏବଂ ଗୋଦାବରୀଶ ମିଶ୍ର ଆଉ କିଛି କିଛି ଲେଖୁଥିଲେ । ପ୍ରତି ସପ୍ତାହରେ ଗୋଦାବରୀଶବାବୁ ସାକ୍ଷୀଗୋପାଳ ରେଳଷ୍ଟେସନକୁ ଯାଇ ରେଳଗାଡ଼ିରେ ସେ ଲେଖାସବୁ ଦେଇଆସୁଥିଲେ । 'ଆଶା' ପାଇଁ ଲେଖା ସଂଗ୍ରହ ଏବଂ ପତ୍ରିକା ବିଷୟରେ ଆଲୋଚନା ପାଇଁ ଶଶିବାବୁ ପ୍ରତି ମାସରେ ଥରେ ଦୁଇ ଥର ସତ୍ୟବାଦୀ ଯାଉଥିଲେ । ସେଠାରେ ଗୋପବନ୍ଧୁ ଓ ନୀଳକଣ୍ଠଙ୍କ ସହିତ ଦେଶମିଶ୍ରଣ, ଦେଶର ରାଜନୈତିକ ପରିସ୍ଥିତି, ଓଡ଼ିଶାର ଅର୍ଥନୈତିକ ସାଂସ୍କୃତିକ ଏବଂ ସାମାଜିକ ସମସ୍ୟା ପ୍ରଭୃତି ବହୁ ବିଷୟରେ ଆଲୋଚନା କରୁଥିଲେ ।

ପ୍ରଥମେ ସେ ସତ୍ୟବାଦୀଗୋଷ୍ଠୀ ଉପରେ ଏକପ୍ରକାର ନିର୍ଭରଶୀଳ ଥିଲେ; ମାତ୍ର ବର୍ଷକ ପରେ ସେ ନିଜେ ସଂପାଦକୀୟ ଏବଂ ଅଗ୍ରଲେଖମାନ ଲେଖିଲେ ଏବଂ ଜଣେ ସୁଦକ୍ଷ ସମ୍ପାଦକରୂପେ ବିବେଚିତ ହେଲେ; କିନ୍ତୁ ସତ୍ୟବାଦୀର ପଞ୍ଚସଖାଙ୍କ ସହିତ ଭାବଗତ ସମ୍ପର୍କ ଅବ୍ୟାହତ ରଖିଥିଲେ । ସତ୍ୟବାଦୀର ପଞ୍ଚସଖା ମଧ୍ୟ ନିଜର ସୁବିଧା ଅନୁସାରେ ଆଶାକୁ ଲେଖାମାନ ପଠାଉଥିଲେ । ନୀଳକଣ୍ଠ ଦାସଙ୍କର ଓଡ଼ିଆ ଲିପି ସଂସ୍କାର ବିଷୟରେ ପ୍ରବନ୍ଧମାନ ପ୍ରଥମେ ଆଶାରେ ପ୍ରକାଶିତ ହୋଇଥିଲା । ଗୋପବନ୍ଧୁବାବୁଙ୍କର ଦଶପଲ୍ଲୀ ମେଳି ବିଷୟରେ ଲେଖାମାନ ମଧ୍ୟ ଆଶାରେ ପ୍ରକାଶିତ ହୋଇଥିଲା । ୧୯୧୯ ମସିହାରେ ସାପ୍ତାହିକ ସମାଜ ପ୍ରକାଶ ପାଇବା ପର୍ଯ୍ୟନ୍ତ ସତ୍ୟବାଦୀର ପଞ୍ଚସଖା ଓତପ୍ରୋତ ଭାବେ ଆଶା ସହିତ ଜଡ଼ିତ ଥିଲେ । ଛାତ୍ର ଅବସ୍ଥାରୁ ସତ୍ୟବାଦୀ ସ୍କୁଲରେ କାର୍ଯ୍ୟ କଲା ପର୍ଯନ୍ତ ଗୋପବନ୍ଧୁ, ନୀଳକଣ୍ଠ ଓ ଗୋଦାବରୀଶବାବୁ ପ୍ରଭୃତି ପଞ୍ଚସଖା ପ୍ରବନ୍ଧ ଓ କବିତା ପ୍ରଭୃତି 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶ କରୁଥିଲେ । ୧୯୧୫ ମସିହାରେ ସେମାନେ ନିଜର ଗୋଟିଏ ସାହିତ୍ୟ ପତ୍ରିକା ପ୍ରକାଶ କରିବାକୁ ସ୍ଥିରକଲେ ଏବଂ ସେ ନିଷ୍ପତ୍ତି ଶଶିଭୂଷଣବାବୁଙ୍କୁ ସଙ୍ଗେ ସଙ୍ଗେ ଜଣାଇଲେ । ଶଶିବାବୁ ଖୁସିରେ ସେମାନଙ୍କ ପ୍ରସ୍ତାବ ଗ୍ରହଣକଲେ ଏବଂ ୧୯୧୫ ମସିହାରୁ 'ମାସିକ ସତ୍ୟବାଦୀ' ସାହିତ୍ୟ ପତ୍ରିକା ଆଶା ପ୍ରେସ୍‌ରୁ ପ୍ରକାଶପାଇଲା । ଗୋପବନ୍ଧୁବାବୁ ତାର ସଂପାଦକ ହୋଇଥିଲେ ଏବଂ ଶଶିବାବୁ ତାର ପରିଚାଳକ ରୂପେ ବ୍ୟାବସାୟିକ ଦିଗ ଦେଖୁଥିଲେ ।

ସତ୍ୟବାଦୀର ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, ଆଚାର୍ଯ୍ୟ ହରିହର ଏବଂ କୃପାସିନ୍ଧୁ ମିଶ୍ରଙ୍କ ବ୍ୟତୀତ ଫକୀରମୋହନ, ଗୋପାଳଚନ୍ଦ୍ର ପ୍ରହରାଜ, ଜଗବନ୍ଧୁ ସିଂହ, ପ୍ରଚାରକ ଅନନ୍ତ ମିଶ୍ର, ପାରଳାର ରାମକୃଷ୍ଣ ମିଶ୍ର ଓ ଅପନା ପରିଚ୍ଛା, ମଞ୍ଜୁଷାର ଗଦାଧର ବିଦ୍ୟାଭୂଷଣ ଓ ରାଜଗୋପାଳ ଆଚାରୀ, ବିଶାଖାପାଟଣାରୁ ବିକ୍ରମଦେବ ବର୍ମା, ବାଲୁଗାଁରୁ

ରାଧାଚରଣ ପଣ୍ଡା, ବ୍ରହ୍ମପୁରର ରାମଚନ୍ଦ୍ର ଆଚାର୍ଯ୍ୟ, ସଦାଶିବ ବିଦ୍ୟାଭୂଷଣ ଓ ଜୟମଙ୍ଗଳ ରଥ ପ୍ରମୁଖ ସେ ସମୟର ବହୁ ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଓ ଲେଖକ ସାପ୍ତାହିକ ଆଶାରେ ଲେଖୁଥିଲେ । ସମ୍ବାଦ ପରିବେଷଣ ଓ ସାହିତ୍ୟ ସମୃଦ୍ଧିକୁ ଆଶା ସମାନ ଗୁରୁତ୍ୱ ଦେଉଥିଲା । ପ୍ରାକୃତିକ ଓଡିଶାର ସବୁଆଡ଼େ ଆଶାର ସମ୍ବାଦଦାତା ଏବଂ ବିକ୍ରେତା ରହିଥିଲେ । ସମ୍ବାଦଦାତାମାନେ ମାସକୁ ତିନିଟଙ୍କାରୁ ଦଶଟଙ୍କା ପର୍ଯ୍ୟନ୍ତ ପାରିଶ୍ରମିକ ପାଉଥିଲେ ଏବଂ ବିକ୍ରେତାମାନେ ଶତକଡ଼ା ୨୫ ଭାଗ କମିସନି ପାଉଥିଲେ ।

'ଅଳ୍ପ ସମୟ ମଧ୍ୟରେ 'ଆଶା' କାଗଜ ପ୍ରାକୃତିକ ଓଡିଶାରେ ଜନପ୍ରିୟ ହେଲା ଏବଂ ଏହାର ପାଠକସଂଖ୍ୟା ବୃଦ୍ଧିପାଇଲା । ଦେଶମିଶ୍ରଣ ବିଷୟରେ ସେତେବେଳେ ବହୁ ଲେଖା ଆଶାରେ ପ୍ରକାଶିତ ହେଉଥିଲା । 'ଆଶା' ଯୋଗୁଁ ରସୁଲକୁଣ୍ଡା ଏବଂ ଆସିକାର କୋର୍ଟ କଚେରି ଓ ଅଫିସମାନଙ୍କରେ ତେଲଗୁ ଭାଷା ପରିବର୍ତ୍ତେ ଓଡିଆ ଭାଷା ପ୍ରଚଳିତ ହୋଇଥିଲା । ୧୯୧୪ ମସିହାରେ ବିଶ୍ୱଯୁଦ୍ଧ ଆରମ୍ଭ ହେବା ପରେ, ଯୁଦ୍ଧବିଷୟକ ଚମକପ୍ରଦ ଖବରମାନ ଆଶାରେ ପ୍ରକାଶ ପାଉଥିବାରୁ ତାହାର ଲୋକପ୍ରିୟତା ପ୍ରାକୃତିକ ଓଡିଶାରେ ଆହୁରି ଅଧିକ ବୃଦ୍ଧି ପାଇଥିଲା । କଟକ, ପୁରୀ ଆଦି ସ୍ଥାନରେ ଏହାର ପ୍ରସାର ଖୁବ୍ ଅଧିକ ଥିଲା । କେବଳ ରେଭେନ୍ସା କଲେଜରେ ଦୁଇଶହରୁ ଅଧିକ ଆଶା କାଗଜ ବିକ୍ରିହେଉଥିଲା । ବାଲେଶ୍ୱର, ସମ୍ବଲପୁର, ମୟୂରଭଞ୍ଜ, କେନ୍ଦୁଝର, ବଲାଙ୍ଗିର, ଖଡ଼ିଆଳ ପ୍ରଭୃତି ଦୂର ଅଞ୍ଚଳମାନଙ୍କୁ ମଧ୍ୟ ଆଶା ବହୁ ସଂଖ୍ୟାରେ ଯାଉଥିଲା ।

ଗଞ୍ଜାମ ଜିଲ୍ଲାରେ ଆଶା ପ୍ରେସ୍ ରାଜନୈତିକ, ସାଂସ୍କୃତିକ ଏବଂ ସାମାଜିକ କେନ୍ଦ୍ରରୂପେ କାର୍ଯ୍ୟକରୁଥିଲା । ଦୂରରୁ ଆସୁଥିବା ଅନେକ ଲୋକ ଦିନେ ଦୁଇ ଦିନ ଆଶା ପ୍ରେସ୍‌ରେ ରହିଯାଉଥିଲେ । ଆଶା ଯୋଗୁଁ ବ୍ରହ୍ମପୁରର ଓଡିଆମାନଙ୍କର ହୀନମନ୍ୟତା ଅନେକ ପରିମାଣରେ ଦୂରହୋଇଥିଲା । ଶଶିବାବୁ ଜଣେ ପ୍ରଭାବଶାଳୀ ବ୍ୟକ୍ତି ହୋଇଥିଲେ ଏବଂ ସରକାରୀ ଏବଂ ବେସରକାରୀ ସ୍ତରରେ ସେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି ହୋଇଥିଲେ । ସେ ବ୍ରହ୍ମପୁର ମ୍ୟୁନିସିପାଲିଟୀର ସଭ୍ୟ ହୋଇ ତାହାର ଉପନଗରପାଳ ହୋଇଥିଲେ । ୧୯୧୪ ମସିହାର ଡିସେମ୍ବର ୨୬ ଓ ୨୭ ତାରିଖ ଦୁଇ ଦିନ ପାରଳାଖେମୁଣ୍ଡିରେ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏଥିପାଇଁ ବହୁପୂର୍ବରୁ 'ଆଶା' ମାଧ୍ୟମରେ ଜନମତ ସୃଷ୍ଟି କରାଯାଇଥିଲା । ଆଶା କାଗଜ ସମ୍ମିଳନୀର ମୁଖପତ୍ର ଭାବରେ କାର୍ଯ୍ୟ କରିଥିବାରୁ, ତାହାର ସଂପାଦକ ଶଶିବାବୁ ସେଠାରେ ଜଣେ ତୁଙ୍ଗ ନେତାରୂପେ ପରିଗଣିତ ହୋଇଥିଲେ ।

୧୯୧୫ ମସିହାରୁ ଆଶା ପ୍ରେସ୍‌ରୁ ପ୍ରକାଶିତ ହେଉଥିବା ମାସିକ 'ସତ୍ୟବାଦୀ' ସାହିତ୍ୟ ପତ୍ରିକା ୧୯୧୭ ମସିହାରେ ପୁରୀକୁ ସ୍ଥାନାନ୍ତରିତ ହେବା ପରେ, ଶଶିବାବୁ ବ୍ରହ୍ମପୁରଠାରେ ଏକ ସାହିତ୍ୟ ପତ୍ରିକାର ଅଭାବ ଅନୁଭବ କରିଥିଲେ । ସେହି ବର୍ଷ ଦଶହରାବେଳେ ସେ 'ପ୍ରଦୀପ' ନାମରେ ଏକ ମାସିକ ସାହିତ୍ୟ ପତ୍ରିକାର ପ୍ରକାଶନ ଆରମ୍ଭ କରିଥିଲେ । ପତ୍ରିକା ପ୍ରକାଶନର କାରଣ ବିଷୟରେ ସେ ପ୍ରଥମ ସଂଖ୍ୟାର ସଂପାଦକୀୟରେ

ଲେଖିଥିଲେ, ''ଗଞ୍ଜାମ ଗୋଟିଏ ବଡ଼ ଜିଲ୍ଲା ଏବଂ ଗୋଟିଏ ଓଡ଼ିଆପ୍ରଧାନ ଜିଲ୍ଲା । ମାତ୍ର କାଳକ୍ରମେ କୋଟ କଚେରି ଓ ସ୍କୁଲମାନଙ୍କରେ ଅନ୍ୟ ଭଷାର ବ୍ୟବହାର ଓ ପ୍ରାଧାନ୍ୟଯୋଗୁଁ ଏହି ଜିଲ୍ଲାର ଓଡିଆମାନେ ନିଜ ମାତୃଭାଷା ଓ ସାହିତ୍ୟସେବାରେ ପ୍ରବୃତ୍ତ ହେବା ପାଇଁ ସେତେ ସାହସୀ ହେଉନାହାନ୍ତି । ଫଳରେ ଭଞ୍ଜଭୂମି ଗଞ୍ଜାମ ତାହାର ପୂର୍ବ-ଗୌରବ ପାଶୋରିପକାଇଅଛି । ଏବେ ସୁଦ୍ଧା ଏହି ଦୁରବସ୍ଥାବେଳେ ପ୍ରାଚୀନ ଧରଣର ଲେଖକ ଓ କବି ଗଞ୍ଜାମର ସ୍ଥାନେ ସ୍ଥାନେ ଅଛନ୍ତି; ନୂତନ ଧରଣର ଲେଖକ ମଧ ବାହାରୁଅଛନ୍ତି । ଏପରି ଏକ ବିରାଟ ଜିଲ୍ଲାରେ ଖଣ୍ଡିଏ ସୁଦ୍ଧା ସାହିତ୍ୟପତ୍ରିକା ନଥିବା ପରିତାପର ବିଷୟ । 'ପ୍ରଦୀପ' କେବଳ ଗଞ୍ଜାମର ଏହି ଅଭାବ ପୂରଣ କରିବ ବୋଲି ଆମ୍ଭେମାନେ ଆଶା କରୁ ।'' ୧୯୧୭ ମସିହାଠାରୁ ୧୯୧୯ ମସିହା ପର୍ଯ୍ୟନ୍ତ ପ୍ରଦୀପ ନିୟମିତ ଭାବରେ ପ୍ରକାଶପାଉଥିଲା । ତାହାପରେ ପ୍ରାୟ ପାଞ୍ଚବର୍ଷ ବନ୍ଦହୋଇ ପୁଣି ୧୯୨୪ ମସିହାଠାରୁ ୧୯୨୬ ମସିହା ପର୍ଯ୍ୟନ୍ତ ଦୁଇ ବର୍ଷ ପ୍ରକାଶିତ ହୋଇଥିଲା ।

ପ୍ରଦୀପର ବିଭିନ୍ନ ସଂଖ୍ୟାରେ ସେ ସମୟର ଓଡିଶାର ପ୍ରଖ୍ୟାତ ସାହିତ୍ୟକ ଗୋଦାବରୀଶ ମିଶ୍ର, ଦୟାନିଧି ମିଶ୍ର, ଗୋଦାବରୀଶ ମହାପାତ୍ର, ଚିନ୍ତାମଣି ମହାନ୍ତି, ଗୋପବନ୍ଧୁ ଦାସ, ଅନନ୍ତ ମିଶ୍ର, ଜଗବନ୍ଧୁ ସିଂହ, କୃପାସିନ୍ଧୁ ମିଶ୍ର, ଶଶିଭୂଷଣ ରାୟ, ନୀଳମଣି ବିଦ୍ୟାରତ୍ନ, ସତ୍ୟନାରାୟଣ ରାଜଗୁରୁ ପ୍ରଭୃତି ଲେଖୁଥିଲେ । ସେଥିରେ ଗଳ୍ପ, ଉପନ୍ୟାସ, ସାହିତ୍ୟ-ଆଲୋଚନା ଓ ଗବେଷଣାମୂଳକ ପ୍ରବନ୍ଧମାନ ପ୍ରକାଶପାଉଥିଲା । ସଂପାଦକ ଶଶିଭୂଷଣ ରଥ ନିଜେ 'ବିବିଧ ପ୍ରସଙ୍ଗ' ଶିରୋନାମାରେ ତତ୍‌କାଳୀନ ସାହିତ୍ୟିକ, ସାମାଜିକ, ରାଜନୈତିକ ଏବଂ ଶିକ୍ଷାଗତ ସମସ୍ୟା ଉପରେ ବୌଦ୍ଧିକ ଆଲୋଚନା କରୁଥିଲେ । ସ୍ୱଳ୍ପକାଳ ପ୍ରକାଶନ ମଧରେ ପ୍ରଦୀପର ଓଡ଼ିଆ ସାହିତ୍ୟକୁ ଅବଦାନ ଯୋଗୁଁ ବର୍ତ୍ତମାନ ସୁଦ୍ଧା ବହୁ ସାହିତ୍ୟିକ ପ୍ରଶଂସା କରୁଛନ୍ତି ।

୧୯୧୯ ମସିହାରେ ଗଞ୍ଜାମ ଜିଲ୍ଲାରେ ଗୋଟିଏ ବଡ଼ ଦୁର୍ଭିକ୍ଷ ହୋଇଥିଲା । ସେ ସମୟରେ ଗଞ୍ଜାମ ଜିଲ୍ଲାର କଲେକ୍ଟର କାଟରେଲା ସାହେବ ଅନ୍ୟ ଅଞ୍ଚଳରୁ ଗଞ୍ଜାମକୁ ଖାଦ୍ୟପଦାର୍ଥ ଆଣିବାକୁ ବରାଦ କରିନଥିବାରୁ ଅନେକ ଲୋକ ଅନାହାରରେ ମରିଯାଇଥିଲେ । ଶଶିବାବୁ ବାରମ୍ବାର 'ଆଶା'ରେ ଲେଖିଲେ ଯେ, ଏହିସବୁ ଅନାହାର ମୃତ୍ୟପାଇଁ କଲେକ୍ଟର ବ୍ୟକ୍ତିଗତ ଭାବରେ ଦାୟୀ । ମାନ୍ଦ୍ରାଜ ସରକାର ଆଶାରେ ପ୍ରକାଶିତ ଅଭିଯୋଗମାନ ଅନୁସନ୍ଧାନ କରି, ସେଗୁଡ଼ିକର ସତ୍ୟତା ବିଷୟରେ ଅବଗତ ହେଲେ ଏବଂ ତୁରନ୍ତ ପଦକ୍ଷେପ ନିମିତ୍ତ ମରୁଡି-ସାହାଯ୍ୟ ପାଇଁ ୪୦ ଲକ୍ଷ ଟଙ୍କା ମଞ୍ଜୁର କରିଥିଲେ । ସେଥିରେ ଜଳପଥରେ ଚାଉଳ ଅଣାଯାଇ ସମଗ୍ର ଗଞ୍ଜାମ ଜିଲ୍ଲାରେ ବିକ୍ରୟ କରାଯାଇଥିଲା । ଶଶିବାବୁଙ୍କର ଦୈନିକ ଆଶାରେ ନିର୍ଭୀକ ଲେଖାଯୋଗୁଁ ଏହା ସମ୍ଭବ ହୋଇଥିଲା ।

୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନ ଆରମ୍ଭହୋଇଗଲା । ଶଶିବାବୁ ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିନଥିଲେ । ମାତ୍ର ସାପ୍ତାହିକ ଆଶାକୁ ଅସହଯୋଗର ବାର୍ତ୍ତା ପ୍ରଚାରରେ ବିନିଯୋଗ କରିଥିଲେ । ଅସହଯୋଗ ଆନ୍ଦୋଳନର

ପ୍ରଧାନ ଲକ୍ଷ୍ୟ ଥିଲା ଭାରତର ସ୍ୱାଧୀନତା । ସ୍ୱାଧୀନତା ପରେ ଦେଶର ବିଭିନ୍ନ ପ୍ରଦେଶ ଗଠନ ପ୍ରତି ଧ୍ୟାନ ଦିଆଯିବ ବୋଲି କଂଗ୍ରେସର ମତ ଥିଲା; ମାତ୍ର ମଧୁବାବୁ ପ୍ରଭୃତିଙ୍କ ପ୍ରଧାନ ଲକ୍ଷ୍ୟ ଥିଲା ତୁରନ୍ତ ଓଡ଼ିଆମାନଙ୍କର ଏକତ୍ରୀକରଣ ଏବଂ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ । ଶଶିବାବୁ ମଧୁବାବୁ ଓ ତାଙ୍କ ଅନୁଗାମୀମାନଙ୍କ ସହ ଏକମତ ଥିଲେ ।

୧୯୨୧ ମସିହା ମାର୍ଚ୍ଚ ମାସରେ ମହାତ୍ମା ଗାନ୍ଧି ଓଡିଶାଗସ୍ତ ସମୟରେ ବ୍ରହ୍ମପୁରଠାରେ ମଧୁସୂଦନ ପାଣିଗ୍ରାହୀଙ୍କ ଘରେ ଗୋଟିଏ ଦିନ ଅବସ୍ଥାନ କରିଥିଲେ । ସେତେବେଳେ ଶଶିବାବୁ ପ୍ରଭୃତି ତାଙ୍କୁ ସାକ୍ଷାତକରି ତତ୍‌କାଳୀନ ଓଡିଶାର ପ୍ରଧାନ ସମସ୍ୟା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ, ଆନ୍ଧ୍ର ପ୍ରଦେଶ ଏବଂ ଓଡିଶାର ସୀମାବିବାଦର ଆଶୁ ସମାଧାନ ବିଷୟ ତାଙ୍କୁ ବୁଝାଇଥିଲେ । ଗାନ୍ଧିଜୀ ଓଡ଼ିଶା ଏବଂ ଆନ୍ଧ୍ର ସୀମା ବିବାଦ ଶୀଘ୍ର ସମାଧାନ କରିବା ପାଇଁ ତେଲଗୁ ଲୋକମାନଙ୍କୁ କହିଥିଲେ । ଗଞ୍ଜାମର ଲୋକମାନଙ୍କ ଅନୁରୋଧରେ ଗାନ୍ଧିଜୀ ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟିକୁ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଅଧୀନରେ ରଖିବାକୁ ରାଜିହୋଇଥିଲେ । ଏ ନିଷ୍ପତ୍ତିରେ ଗଞ୍ଜାମର ଓଡ଼ିଆମାନେ ଖୁସିହୋଇଥିଲେ; ମାତ୍ର ତେଲଗୁମାନେ କ୍ଷୁବ୍ଧ ହୋଇଥିଲେ । ୧୯୩୦ ମସିହାରେ ଶଶିବାବୁ ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟିର ସଭାପତି ନିର୍ବାଚିତ ହୋଇଥିଲେ । ଲବଣ ସତ୍ୟାଗ୍ରହରେ ଗାନ୍ଧିଜୀ ବନ୍ଦୀ ହେବାରୁ ସେ ଗଞ୍ଜାମ ଜିଲ୍ଲାରେ ବିକ୍ଷୋଭ ଆୟୋଜନ କରିଥିଲେ; ମାତ୍ର ଲବଣ ସତ୍ୟାଗ୍ରହରେ ଭାଗ ନେଇନଥିଲେ । ୧୯୩୨ ମସିହାରେ ପ୍ରସ୍ତାବିତ ପୁରୀ କଂଗ୍ରେସ ଅଧିବେଶନ ପାଇଁ ଶଶିବାବୁ ଗଞ୍ଜାମ ଜିଲ୍ଲାରୁ ଚାରିଶହ ସଭ୍ୟ ସଂଗ୍ରହକରି ନୀଳକଣ୍ଠ ଦାସଙ୍କୁ ଅଭ୍ୟର୍ଥନା ସମିତିର ସଂପାଦକ ହେବାକୁ ସାହାଯ୍ୟ କରିଥିଲେ ।

୧୯୨୨ ମସିହରେ ଆଶା ପ୍ରେସରୁ 'ଇଷ୍ଟ କୋଷ୍ଟ' (East Coast) ନାମରେ ଗୋଟିଏ ଇଂରାଜୀ ସାପ୍ତାହିକ ପତ୍ରିକା ପ୍ରକାଶିତ ହେଲା । ଏଥିର ଜାତୀୟ, ଆନ୍ତର୍ଜାତିକ ବିଭିନ୍ନ ବିଷୟ ସମେତ ସ୍ଥାନୀୟ ବିଷୟମାନଙ୍କ ଉପରେ ସାରଗର୍ଭକ ଆଲୋଚନାମାନ ପ୍ରକାଶପାଉଥିଲା । ଉଚ୍ଚକୋଟୀର ଆଲୋଚନାଯୋଗୁଁ ଏ ପତ୍ରିକାଟି ବୁଦ୍ଧିଜୀବୀମାନଙ୍କଦ୍ୱାରା ବିଶେଷ ଭାବରେ ଆଦୃତ ହେଉଥିଲା । ୧୯୨୨ ମସିହାରେ ଗୋଦାବରୀଶ ମିଶ୍ର ଚକ୍ରଧରପୁରଠାରୁ ବାଣପୁର ଫେରି ଯେତେବେଳେ ଘୋର ଦାରିଦ୍ର୍ୟ ମଧରେ ଜୀବନଯାପନ କରୁଥିଲେ, ସେତେବେଳେ ଶଶିବାବୁଙ୍କ ଅନୁରୋଧରେ ନିୟମିତ ଭାବରେ 'ଇଷ୍ଟ କୋଷ୍ଟ'ରେ ଇଂରେଜୀରେ ଲେଖି କିଛି ଅର୍ଥ ଉପାର୍ଜନ କରୁଥିଲେ । ଗୋଦାବରୀଶବାବୁ ମଧ ଆଶା ପ୍ରେସରୁ ନିଜ ସଂପାଦନାରେ 'ଲୋକମତ' ନାମରେ ଗୋଟିଏ ସାପ୍ତାହିକ ପତ୍ରିକା ୧୯୨୨ ମହିହାରୁ ୧୯୨୪ ମସିହା ପର୍ଯ୍ୟନ୍ତ ଦୁଇବର୍ଷ ପ୍ରକାଶ କରୁଥିଲେ ।

ମାନ୍ଦ୍ରାଜ ପ୍ରେସିଡ଼େନ୍ସିରେ ରହିଥିବା ଗଞ୍ଜାମ ଜିଲ୍ଲାର ଓଡିଆମାନେ ଜିଲ୍ଲାକୁ ଓଡ଼ିଶା ସହିତ ମିଶାଇବା ପାଇଁ ବହୁଦିନରୁ ଦାବିକରିଆସୁଥିଲେ । ଓଡ଼ିଆମାନଙ୍କର ଏହି ଦାବି ଯଥାର୍ଥ କି ନୁହେଁ, ଅନୁସନ୍ଧାନ କରି ଜାଣିବାକୁ ବ୍ରିଟିଶ ସରକାର ସି.ଏଲ୍. ଫିଲିପ୍ ଏବଂ ଏ.ସି. ଡ଼ଫ୍‌କୁ ନେଇ ୧୯୨୪ ମସିହାରେ ଗୋଟିଏ କମିଟି କରିଥିଲେ । କମିଟି ୧୯୨୪

ମସିହା ନଭେମ୍ବର ଓ ଡିସେମ୍ବର ମାସରେ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର, ଜୟପୁର ଓ ପାରଳାଖେମୁଣ୍ଡି ଏବଂ ଏଜେନ୍ସି ଅଞ୍ଚଳର ବହୁ ସ୍ଥାନ ପରିଭ୍ରମଣ କରି ଲୋକମତ ସଂଗ୍ରହ କରିଥିଲେ । ଏଥିପାଇଁ ଶଶିବାବୁ ଆଶା ମାଧ୍ୟମରେ ପ୍ରବଳ ଜନମତ ସୃଷ୍ଟିକରିଥିଲେ । ଏ ବିଷୟରେ ସେତେବେଳେ ବହୁ ଲେଖା ଆଶାରେ ପ୍ରକାଶ ପାଉଥିଲା ଏବଂ ଶଶିବାବୁ ନିଜେ ଜିଲ୍ଲାର ବିଭିନ୍ନ ସ୍ଥାନ ବୁଲି କମିଟି ଆଗରେ ସାକ୍ଷ୍ୟ ଦେବାପାଇଁ ଲୋକମାନଙ୍କୁ ବୁଝାଇଥିଲେ ଏବଂ ବିଭିନ୍ନ ସ୍ଥାନରେ ଶହ ଶହ ଲୋକଙ୍କୁ ସଙ୍ଗରେ ନେଇ ସାକ୍ଷ୍ୟ ପ୍ରଦାନ କରାଇଥିଲେ । ସେ ବ୍ରହ୍ମପୁର ପ୍ରଭୃତି ଜିଲ୍ଲାର ବିଭିନ୍ନ ସହରରେ ସଭା କରାଇଥିଲେ ଏବଂ ତାଙ୍କ ଉଦ୍ୟମରେ ଜିଲ୍ଲାର ରୟତ ସଭା, ଗଞ୍ଜାମ ଓଡ଼ିଆ ସଂଘ ପ୍ରଭୃତି ଅନୁଷ୍ଠାନମାନ କମିଟି ଆଗରେ ସାକ୍ଷ୍ୟ ଦେଇଥିଲେ । ଆଶା ମାଧ୍ୟମରେ କମିଟିର ଭ୍ରମଣସ୍ଥାନ ଏବଂ ସାକ୍ଷ୍ୟ ଦେବାର ତାରିଖ ନିୟମିତ ଭାବରେ ଲୋକମାନଙ୍କୁ ଜଣାଇଦେଉଥିଲେ । ଆଶା ସର୍ବଦା ଦେଶମିଶ୍ରଣ ଆନ୍ଦୋଳନର ମୁଖପତ୍ରରୂପେ କାର୍ଯ୍ୟ କରୁଥିଲା । ଶଶିବାବୁଙ୍କ ସମେତ ଓଡିଆମାନଙ୍କର ନେତାମାନଙ୍କ ଉଦ୍ୟମ ଫଳରେ କମିଟି ଓଡ଼ିଶା ସପକ୍ଷରେ ମତ ପ୍ରଦାନ କରିଥିଲେ ।

୧୯୨୭ ମସିହାରେ ଭାରତର ଶାସନ ସଂସ୍କାର ପାଇଁ କି ପଦକ୍ଷେପ ନିଆଯାଇପାରେ ତାହାର ଅନୁସନ୍ଧାନ ପାଇଁ ବ୍ରିଟିଶ ସରକାର ସାର ଜନ୍ ସାଇମନ୍‌ଙ୍କ ଅଧ୍ୟକ୍ଷତାରେ ଗୋଟିଏ କମିସନ ଗଠନ କରିଥିଲେ । କମିସନ ୧୯୨୮ ମସିହାରେ ଭାରତର ବିଭିନ୍ନ ସହର ଭ୍ରମଣ କରି ଭାରତର ଭାବୀ ଶାସନପ୍ରଣାଳୀ ବିଷୟରେ ବିଭିନ୍ନ ଶ୍ରେଣୀର ଭାରତୀୟ ନେତାମାନଙ୍କ ସହିତ ଆଲୋଚନା କରିଥିଲେ । କମିସନ୍‌ରେ କୌଣସି ଭାରତୀୟ ପ୍ରତିନିଧି ନଥିବାରୁ କଂଗ୍ରେସ ଏହି କମିସନ୍‌ଙ୍କୁ ବିରୋଧ କରୁଥିଲା ଏବଂ ଭାରତର ସବୁ ରାଜ୍ୟରେ କଂଗ୍ରେସ ଲୋକମାନେ କମିସନର କାର୍ଯ୍ୟକ୍ରମ ସହିତ ସହଯୋଗ କରୁନଥିଲେ । ମାତ୍ର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପ୍ରସ୍ତାବ କମିସନ ବିଚାରକରୁଥିବାରୁ ମଧୁବାବୁଙ୍କ ସମେତ ଉତ୍କଳ ସମ୍ମିଳନୀର କର୍ମକର୍ତ୍ତାମାନେ କମିସନ୍‌କୁ ସ୍ୱାଗତକରିଥିଲେ ଏବଂ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ପାଇଁ ସୁପାରିସ୍ କରିବାକୁ କମିସନ୍‌ଙ୍କୁ ଗୋଟିଏ ସ୍ମାରକପତ୍ର ଦେଇଥିଲେ । ଶଶିବାବୁ ସେତେବେଳେ ଉତ୍କଳ ସମ୍ମିଳନୀର ଜଣେ କର୍ମକ :ବରେ ସାପ୍ତାହିକ ଆଶାରେ କମିସନ୍‌ଙ୍କୁ ସ୍ୱାଗତକରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ସୁପାରିସ୍ କରିବାକୁ କେତେଗୁଡ଼ିଏ ଲେଖା ଲେଖିଥିଲେ ।

୧୯୨୭ ମସିହାରେ ଖଦୀପ୍ରସାର କାର୍ଯ୍ୟରେ ଗାନ୍ଧିଜୀ ଦ୍ୱିତୀୟ ଥର ପାଇଁ ଓଡ଼ିଶା ଆସିଥିଲେ । ତାଙ୍କର ଏହି ଗସ୍ତକ୍ରମରେ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର, କୋଦଳା ଏବଂ ଆସିକା ପ୍ରଭୃତି ସ୍ଥାନମାନଙ୍କରେ ସଭା କରିବାର ବ୍ୟବସ୍ଥା ହୋଇଥିଲା । ଗାନ୍ଧିଜୀ ଆସିବାର ତିନିମାସ ପୂର୍ବରୁ ସଂଚାଳକ ନିରଞ୍ଜନ ପଟ୍ଟନାୟକ 'ଗାନ୍ଧି ସମାଚାର' ନାମରେ ଗୋଟିଏ ଦୈନିକ ବୁଲେଟିନ୍ ପ୍ରକାଶ କରୁଥିଲେ । ହାତଲେଖା ଏହି ପ୍ରଚାରପତ୍ରଟି ଶହଶହ ସଂଖ୍ୟାରେ ଲିଥୋ କରାଯାଇ ଲୋକମାନଙ୍କ ମଧ୍ୟରେ ବଣ୍ଟାଯାଉଥିଲା । ସେହି ପ୍ରଚାରପତ୍ର ପଢ଼ିବା ପାଇଁ

ଲୋକମାନଙ୍କର ପ୍ରବଳ ଆଗ୍ରହ ଦେଖି ଶଶିବାବୁ ସାପ୍ତାହିକ ଆଶା ସମ୍ବାଦପତ୍ରକୁ ଦୈନିକ ସମ୍ବାଦପତ୍ର କରିବାକୁ ଇଚ୍ଛାକରିଥିଲେ । ସେହି ଅନୁସାରେ ୧୯୨୮ ମସିହା ଅପ୍ରେଲ ମାସ ୧୩ ତାରିଖ ପଣାସଂକ୍ରାନ୍ତିଠାରୁ ଦୈନିକ ଆଶା ପ୍ରକାଶ ପାଇଲା । ଦୈନିକ ଆଶା ପ୍ରକାଶ ପୂର୍ବରୁ ତାର ସର୍ବନିମ୍ନ ବାର୍ଷିକ ଖର୍ଚ୍ଚ ହିସାବ ହୋଇନଥିଲା । ପ୍ରକାଶ ପାଇବା ପରେ ଶଶିବାବୁ ହିସାବ କରି ଦେଖିଲେ ଯେ, ସେ ସମୟର ଦରଦାମ ଅନୁସାରେ ବର୍ଷକୁ ପ୍ରାୟ ୨୫୦୦୦ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିବ । ଏତେ ଟଙ୍କା ତାଙ୍କ ହାତରେ ନଥିଲା । ବହୁ ପରିଶ୍ରମ କରି ବାର୍ଷିକ ଗ୍ରାହକ ଏବଂ ବିଜ୍ଞାପନ ପ୍ରଭୃତିରୁ ସେ ଟଙ୍କା ସଂଗ୍ରହ କରିଥିଲେ । ଦୈନିକ ଆଶା ପ୍ରକାଶ ପାଇଁ ପ୍ରଥମରୁ ଗୋଦାବରୀଶ ମହାପାତ୍ର ଏବଂ ଚିନ୍ତାମଣି ମିଶ୍ରଙ୍କ ପରି ବ୍ୟକ୍ତି ସହସମ୍ପାଦକ ହୋଇଥିଲେ ଏବଂ ଚନ୍ଦ୍ରଶେଖର ମହାପାତ୍ର ପ୍ରୁଫ୍ ରିଡ଼ର ହୋଇଥିଲେ । ସେମାନଙ୍କ ସମେତ ପ୍ରାୟ ପଚାଶ ଜଣ ଦକ୍ଷ କର୍ମଚାରୀ ଦୈନିକ ଆଶାପାଇଁ ନିଯୁକ୍ତ ହୋଇଥିଲେ ।

ବ୍ରହ୍ମପୁର ସହରର ଭେଙ୍କଟେଶ୍ୱର ମନ୍ଦିର ପାର୍ଶ୍ୱରେ ଗୋଟିଏ ଭଡ଼ାଘରେ ସାପ୍ତାହିକ ଆଶା ପ୍ରକାଶନ ପ୍ରେସ୍ ଆରମ୍ଭରୁ ଚାଲିଥିଲା । ସାପ୍ତାହିକ ଇଂରାଜୀ 'ଇଷ୍ଟକୋଷ୍ଟ' ମଧ୍ୟ ସେହିଠାରୁ ପ୍ରକାଶିତ ହେଉଥିଲା । ଆଶା ଦୈନିକ ହେବା ପରେ କର୍ମଚାରୀ ସଂଖ୍ୟା ଏବଂ ଅକ୍ଷର ଷ୍ଟାଣ୍ଡ ସବୁ ବଢ଼ିବାରୁ ସ୍ଥାନର ବିଶେଷ ଅଭାବ ଅନୁଭୂତ ହେଲା । ନିକଟରେ ଆଉ ସୁବିଧାଜନକ ଭଡ଼ାଘର ମିଳିଲା ନାହିଁ । ପ୍ରେସର ନିଜସ୍ୱ ଘର କରିବାକୁ ମଧ୍ୟ ଟଙ୍କା ନଥିଲା । ଶଶିବାବୁ ତାଙ୍କ ସ୍ତ୍ରୀ ଅନ୍ନପୂର୍ଣ୍ଣା ଦେବୀଙ୍କର ଗହଣା ବିକି ତାଙ୍କରି ନାମରେ ହନୁମାନ୍ ମନ୍ଦିର ପାଖରେ ପ୍ରେସ ପାଇଁ ଗୋଟିଏ ଦୋମହଲା କୋଠା ଚାରିହଜାର ଟଙ୍କାରେ କିଣିଲେ । ଘରର ନାମ ହେଲା 'ଶଶିଧାମ' । ତଳମହଲାରେ ପ୍ରେସ ସ୍ଥାପିତ ହେଲା ଏବଂ ଉପରେ ମହଲାରେ ଶଶିବାବୁ ସପରିବାର ରହିଲେ । ତଳମହଲାରେ ପ୍ରେସ୍ ଘରେ ଗୋଟିଏ କୋଠରିରେ ସେ ପ୍ରେସ୍ ଓ ସମ୍ବାଦପତ୍ର ସମ୍ବନ୍ଧୀୟ କାର୍ଯ୍ୟ କରୁଥିଲେ । ପ୍ରେସ୍‌ରେ ମେସିନ୍ ଶବ୍ଦ ଗୋଳମାଳରେ କାର୍ଯ୍ୟ କରିବାକୁ ସେ ଅଭ୍ୟସ୍ତ ହୋଇଯାଇଥିଲେ । ମେସିନ ବନ୍ଦ ହୋଇଗଲେ ବରଂ ତାଙ୍କୁ ଅଶାନ୍ତ ଏବଂ ଅସ୍ୱସ୍ତି ଲାଗୁଥିଲା । ଆଶା ପ୍ରେସରୁ ନିଜର ପତ୍ରିକା ସମେତ ବହୁ ଛୋଟ ଓ ବଡ଼ ଗ୍ରନ୍ଥ ମୁଦ୍ରିତ ହେଉଥିଲା । ଲକ୍ଷ୍ମୀନାରାୟଣ ସାହୁଙ୍କର ମାସିକ ସାହିତ୍ୟ ପତ୍ରିକା 'ସହକାର' ପ୍ରଥମେ ବହୁବର୍ଷ ପର୍ଯ୍ୟନ୍ତ ସେହି ପ୍ରେସ୍‌ରୁ ପ୍ରକାଶିତ ହେଉଥିଲା । ଦୈନିକ ଆଶା ଆରମ୍ଭ ପୂର୍ବରୁ ନିରଞ୍ଜନ ପଟ୍ଟନାୟକ ଆଶା ପ୍ରେସରୁ ମୁଦ୍ରିତ ଏକ ଦୈନିକ ବୁଲେଟିନ୍ ବିତରଣ କରୁଥିଲେ । ୧୯୩୦ ମସିହାରେ ସେଥିରେ ଲବଣ ସତ୍ୟାଗ୍ରହର ବାର୍ତ୍ତା ପ୍ରଚାରିତ ହେଉଥିଲା । ସେଥିପାଇଁ ରାଜଦ୍ରୋହ ଅପରାଧରେ ଉଭୟ ଶଶିବାବୁ ଓ ନିରଞ୍ଜନବାବୁ ଦଣ୍ଡିତ ହୋଇଥିଲେ । ଶଶିବାବୁ ପନ୍ଦରଦିନ ବ୍ରହ୍ମପୁର ଜେଲ୍‌ରେ ରହି ପରେ ଭେଲୋର ଜେଲ୍‌ରେ ରହିଥିଲେ । ସେତେବେଳେ ସେହି ଜେଲ୍‌ରେ ରାଜଗୋପାଳଚାରୀ ଥିଲେ । ଶଶିବାବୁ ଆଠମାସ ଜେଲ୍‌ଦଣ୍ଡ ଭୋଗିଲା ପରେ ଗାନ୍ଧି-ଇର୍‌ଇଉନ୍ ଚୁକ୍ତି ଯୋଗୁଁ ୧୯୩୧ ମସିହା ମାର୍ଚ୍ଚ ମାସରେ ଜେଲ୍‌ରୁ ମୁକ୍ତ ହୋଇଥିଲେ ।

ପ୍ରକାଶନ ଆରମ୍ଭରୁ ସାପ୍ତାହିକ ଏବଂ ପରେ ଦୈନିକ ଆଶା ଓଡ଼ିଆମାନଙ୍କର ଏକତ୍ରୀକରଣ ଏବଂ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ସପକ୍ଷରେ ଜନମତ ସୃଷ୍ଟିକରୁଥିଲା । ଶଶିବାବୁ ୧୯୧୯-୨୦ ମସିହା ପୂର୍ବରୁ ଓଡ଼ିଆ ଆନ୍ଦୋଳନର ଜଣେ ବିଶିଷ୍ଟ ନେତା ହୋଇଥିଲେ ଏବଂ ଆଶା ପତ୍ରିକା ସେ ଆନ୍ଦୋଳନର ମୁଖପତ୍ରରୂପେ କାର୍ଯ୍ୟକରୁଥିଲା । ଉତ୍କଳ ସମ୍ମିଳନୀ ଏବଂ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ବିଷୟରେ ଯେତେ କମିଟି ଓ କମିସନ ଗଠନକରାଯାଇଥିଲା ଏବଂ ବିଭିନ୍ନ କର୍ତ୍ତୃପକ୍ଷଙ୍କ ନିକଟକୁ ଯେତେ ଡେପୁଟେସନ୍ ପଠାଯାଉଥିଲା, ସେ ସବୁ ବିଷୟରେ ଶଶିବାବୁ ମୁଖ୍ୟ ଭୂମିକା ଗ୍ରହଣକରୁଥିଲେ ଏବଂ ସେ ସବୁ ବିଷୟ ପ୍ରଚାର ପାଇଁ ଦୈନିକ ଆଶାକୁ ବ୍ୟବହାର କରାଯାଉଥିଲା ।

ଜନଗଣନା ବେଳେ ମାନ୍ଦ୍ରାଜ୍, ମଧ୍ୟପ୍ରଦେଶ, ବଙ୍ଗଳା ଓ ବିହାର ପ୍ରଦେଶମାନଙ୍କରେ ଓଡିଆ ଆନ୍ଦୋଳନକୁ ଦବାଇବାପାଇଁ ଓଡିଆଭାଷୀ ଲୋକଙ୍କ ସଂଖ୍ୟା କମ୍ ବୋଲି ଦେଖାଇବାକୁ ଚକ୍ରାନ୍ତ ହେଉଥିଲା । ୧୯୩୧ ମସିହା ଜନଗଣନା ସମୟରେ ସେ ସବୁ ଅଞ୍ଚଳରେ ଓଡିଆମାନଙ୍କର ସଂଖ୍ୟା ସଠିକଭାବେ ଉପସ୍ଥାପିତ କରିବାକୁ ଦୈନିକ ଆଶା ପ୍ରବଳ ଉଦ୍ୟମ କରିଥିଲା । ଜନଗଣନା ସମୟରେ ଓଡିଆ ଅନ୍ଦୋଳନର ଶହ ଶହ କର୍ମୀ ଓ ନେତା ସେ ସବୁ ଅଞ୍ଚଳରେ ବୁଲୁଥିଲେ । ସେମାନେ ଜନଗଣନା ବିଷୟରେ ସମ୍ବାଦ ପଠାଇଲେ ଆଶା କାଗଜରେ ତାକୁ ଅଗ୍ରାଧିକାର ଦିଆଯାଇ ପ୍ରକାଶ କରାଯାଉଥିଲା । ୧୯୩୧ ମସିହା ଫେବୃୟାରୀ ମାସରେ ଆଶାର ଗୋଟିଏ ଜନଗଣନା ବିଶେଷାଙ୍କ ପ୍ରକାଶିତ ହୋଇଥିଲା ଏବଂ ଓଡିଆ ଆନ୍ଦୋଳନର କର୍ମୀମାନେ ତାକୁ ବିଚ୍ଛିନ୍ନାଞ୍ଚଳର ଗ୍ରାମାଞ୍ଚଳରେ ବାଣ୍ଟୁଥିଲେ । ସେ ସବୁ ବିଷୟରେ ଶଶିବାବୁ ମଝିରେ ମଝିରେ ସମ୍ପାଦକୀୟ ଲେଖୁଥିଲେ । ମେଦିନୀପୁର ଓ କଲିକତା ପ୍ରଭୃତି ଅଞ୍ଚଳରେ ରହିଥିବା ଓଡିଆମାନଙ୍କର ଅବସ୍ଥା ବିଷୟରେ ଏବଂ ସେମାନଙ୍କଠାରୁ ମିଳୁଥିବା ଚିଠିସବୁ ଦୈନିକ ଆଶାରେ ପ୍ରକାଶପାଉଥିଲା । ଦୈନିକ ଆଶାକୁ ଓଡିଆ ଆନ୍ଦୋଳନର ମୁଖପତ୍ରରୂପେ ବ୍ୟବହାର କରି ଓଡିଆଜାତିର ହିତପାଇଁ କାର୍ଯ୍ୟ କରୁଛନ୍ତି ବୋଲି ଶଶିବାବୁ ପରମ ଆନନ୍ଦ ଲାଭକରୁଥିଲେ ।

୧୯୩୧ ମସିହାରେ ଗୋଲଟେବୁଲ ବୈଠକରେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ପାଇଁ ନିଷ୍ପତ୍ତି ଘୋଷିତ ହେବା ପରେ ବ୍ରିଟିଶ ସରକାର ସାର୍ ସାମୁଏଲ୍ ଓଡ଼ନେଲଙ୍କ ଅଧକ୍ଷତାରେ ନୂତନ ପ୍ରଦେଶର ସୀମା ନିର୍ଦ୍ଧାରଣ ପାଇଁ ଗୋଟିଏ କମିଟି ଗଢ଼ିଥିଲେ । କମିଟି ସେ ବର୍ଷ ନଭେମ୍ବର ମାସରେ ପ୍ରାକୃତିକ ଓଡିଶାର ବିଭିନ୍ନ ସ୍ଥାନ ବୁଲି ସାକ୍ଷ୍ୟ ଗ୍ରହଣ କରିଥିଲେ । ଶଶିବାବୁ ଦୈନିକ ଆଶା ମାଧ୍ୟମରେ ଓଡନେଲ୍ କମିଟିରେ ସାକ୍ଷ୍ୟପ୍ରଦାନ ପାଇଁ ଜନମତ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ନିଜେ ଦକ୍ଷିଣରେ ବିଶାଖାପାଟଣା ପର୍ଯ୍ୟନ୍ତ ବୁଲି ସାକ୍ଷ୍ୟ ଦେବା ସକାଶେ ଲୋକମାନଙ୍କୁ ଉତ୍ସାହିତ କରିଥିଲେ । ଲୋକମାନେ ସାକ୍ଷ୍ୟ ଦେବା ପାଇଁ ବ୍ରହ୍ମପୁର ଆସିଲେ, ସେମାନଙ୍କୁ ଗୋପାଳପୁର ନେଇ ସାକ୍ଷ୍ୟ ପ୍ରଦାନର ବ୍ୟବସ୍ଥା କରୁଥିଲେ । ସେଥିପାଇଁ ଗୋପାଳପୁରଠାରେ ଗୋଟିଏ ସ୍ୱତନ୍ତ୍ର ଅଫିସ୍ ଖୋଲାଯାଇଥିଲା । କମିଟି ମେମ୍ବରମାନେ ବ୍ରହ୍ମପୁର ରେଳଷ୍ଟେସନରେ ଓହ୍ଲାଇବା ସମୟରେ ଶଶିବାବୁ ବହୁ ଓଡ଼ିଆ

ଲୋକଙ୍କୁ ନେଇ ସେମାନଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ଚିକିଟିରେ ଗୋଟିଏ ବନ୍ଧୁମିଳନ ଭୋଜିସଭା ଆୟୋଜିତ ହୋଇଥିଲା । ସେଥିରେ ଶଶିବାବୁ ଯୋଗଦେଇଥିଲେ; ମାତ୍ର ଓଡିଆମାନଙ୍କର ସମସ୍ତ ପ୍ରଚେଷ୍ଟା ସତ୍ତ୍ୱେ ମାନ୍ଦ୍ରାଜ ଶାସନରେ ଥିବା ଅଣଓଡ଼ିଆ ଲୋକଙ୍କ ପ୍ରଭାବରେ କମିଟି ଓଡ଼ିଆମାନଙ୍କ ସପକ୍ଷରେ ମତ ଦେଇନଥିଲେ । କମିଟିର ଦୁଇ ଭାରତୀୟ ସଭ୍ୟ କମିଟିର ନିଷ୍ପତ୍ତି ସହିତ ଏକମତ ନଥିଲେ । ସେମାନେ ଖବରକାଗଜ ମାଧ୍ୟମରେ ସେମାନଙ୍କର ବିରୁଦ୍ଧ ମତ ମଧ୍ୟ ପ୍ରକାଶ କରିଥିଲେ ।

୧୯୩୩ ମସିହା ମାର୍ଚ୍ଚ ମାସରେ ଓଡିଶାର ସୀମାନିର୍ଦ୍ଧାରଣ ନିଷ୍ପତ୍ତି ପ୍ରକାଶ ପାଇଲା । ଓଡିଶା ସୀମା ମଧ୍ୟରେ ପାରଳାଖେମୁଣ୍ଡି ଏବଂ ଜୟପୁର ଅନ୍ତର୍ଭୁକ୍ତ ହୋଇନଥିଲା । ଏଥିରେ ଓଡିଆ ଆନ୍ଦୋଳନର ନେତାମାନେ ମର୍ମାହତ ହେଲେ ଏବଂ କଟକ, ବ୍ରହ୍ମପୁର, ପାରଳା-ଖେମୁଣ୍ଡି ଏବଂ ଜୟପୁର ସହରମାନଙ୍କରେ ପ୍ରତିବାଦ ସଭାମାନ ଅନୁଷ୍ଠିତ ହେଲା । ସେତେବେଳେ ପାରଳା ମହାରାଜାଙ୍କ ସମେତ ବହୁ ନେତା ପାରଳା ପ୍ରଭୃତି ନମିଶିଲେ ସ୍ୱତନ୍ତ୍ର ପ୍ରଦେଶ ଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କଲେନାହିଁ । ମାତ୍ର ଶଶିବାବୁଙ୍କ ସମେତ ଅନ୍ୟ ବହୁ ନେତା ମତ ବ୍ୟକ୍ତ କଲେ ଯେ, ବର୍ତ୍ତମାନ ଯେଉଁ ଅଞ୍ଚଳମାନ ନେଇ ପ୍ରଦେଶ ଗଠନ କରିବାକୁ ସରକାର ଘୋଷଣା କରିଛନ୍ତି, ତାହା ଗ୍ରହଣ କରାଯାଉ । ସ୍ୱତନ୍ତ୍ର ପ୍ରଦେଶର ନେତାମାନେ ବାହାରେରହିଯାଇଥିବା ଓଡିଆଭାଷୀ ଅଞ୍ଚଳମାନଙ୍କୁ ପ୍ରଦେଶର ଅନ୍ତର୍ଭୁକ୍ତ କରିବା ଉଦ୍ୟମ ଅବ୍ୟାହତ ରଖିବେ । ଶଶିବାବୁ ଏ ବିଷୟରେ ଆଶାର ସମ୍ପାଦକୀୟରେ ଲେଖିଥିଲେ ଯେ, ''କାନ୍ଦୁଥିବା, ଯାହା ମିଳିଲା ବାନ୍ଧୁଥିବା'' । ପାରଳା ମହାରାଜା କିନ୍ତୁ ସେଥିରେ ରାଜି ହୋଇନଥିଲେ । ତାଙ୍କ ମତରେ ବର୍ତ୍ତମାନ ଯେଉଁ ଅଞ୍ଚଳମାନ ଓଡିଶା ପ୍ରଦେଶର ଅନ୍ତର୍ଭୁକ୍ତ ହେବନାହିଁ, ଭବିଷ୍ୟତ୍‌ରେ ମଧ୍ୟ ତାହା ହୋଇପାରିବ ନାହିଁ । ଏଥିଯୋଗୁଁ ଶଶିବାବୁ ଓ ପାରଳା ମହାରାଜାଙ୍କ ମଧ୍ୟରେ ମନାନ୍ତର ଓ ମତାନ୍ତର ହୋଇଥିଲା । ପରେ ପାରଳା ମହାରାଜା ବିଲାତ ଯାଇ ବହୁ ପରିଶ୍ରମକରି ପାରଳାର ଏକ ଅଂଶ ଏବଂ ପୂରା ଜୟପୁର ଜମିଦାରି ଓଡିଶାର ଅନ୍ତର୍ଭୁକ୍ତ କରାଇଥିଲେ । ସେଥିରେ ଶଶିବାବୁ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ଗଜପତି ମହାରାଜା ଏବଂ ଶଶିବାବୁଙ୍କ ମଧ୍ୟରେ ମତାନ୍ତର ଓ ମନାନ୍ତର ବ୍ୟକ୍ତିଗତ ନଥିଲା; ଏହା ନୂତନ ପ୍ରଦେଶ ଗଠନ ବିଷୟରେ ଗୋଟିଏ ସାମୟିକ ଘଟଣା ମାତ୍ର ଥିଲା ।

ଓଡିଶାର ସୀମା ନିର୍ଦ୍ଧାରଣ ବିଷୟରେ ଶ୍ୱେତପତ୍ର ପ୍ରକାଶ ପାଇବା ପରେ ଶଶିବାବୁ ଏକ ଇଂରାଜୀ ପତ୍ରିକାର ଆବଶ୍ୟକତା ଅନୁଭବ କଲେ । କାରଣ ଦୈନିକ ଆଶାରେ ସେତେବେଳେ ଶ୍ୱେତପତ୍ର ବିରୁଦ୍ଧରେ ଯେଉଁ ମତାମତ ସବୁ ପ୍ରକାଶପାଉଥିଲା, ତାହା କେବଳ ଓଡିଆଭାଷୀ ଲୋକମାନଙ୍କ ମଧ୍ୟରେ ସୀମିତ ଥିଲା; ଓଡିଶା ବାହାରର ଲୋକ ଏବଂ ବ୍ରିଟିଶ ସରକାରୀ କର୍ତ୍ତୃପକ୍ଷଙ୍କ ନିକଟରେ ସେ ସବୁ ସିଧାସଳଖ ଭାବରେ ପହଞ୍ଚିପାରୁନଥିଲା । ତେଣୁ ଶଶିବାବୁ ଆଶା ପ୍ରେସରୁ 'ନ୍ୟୁ ଓଡିଶା' ନାମରେ ଗୋଟିଏ ଇଂରାଜୀ ଦୈନିକ ପତ୍ରିକା ପ୍ରକାଶ କରିବାକୁ ନିଷ୍ପତ୍ତି କଲେ ।

ସେହି ନିଷ୍ପତ୍ତି ଅନୁସାରେ ୧୯୩୩ ମସିହା ମଇ ମାସ ୫ ତାରିଖରେ ଆଶା ପ୍ରେସ୍‌ରୁ ଶଶିବାବୁଙ୍କ ସଂପାଦକତ୍ୱରେ ଇଂରାଜୀ ଦୈନିକ ପତ୍ରିକା, 'ନ୍ୟୁ ଓଡିଶା' ପ୍ରକାଶପାଇଲା । ସେତେବେଳେ ଆଶା ପ୍ରେସ୍‌ର ଅବସ୍ଥା ସ୍ୱଚ୍ଛଳ ନଥିଲା । ବହୁ ଅଭାବ ଓ ଅନଟନ ମଧ୍ୟରେ ଗତିକରୁଥିବା ଆଶା ପ୍ରେସରୁ ଆଉ ଗୋଟିଏ ଇଂରାଜୀ ଦୈନିକ ପତ୍ରିକା ପ୍ରକାଶ କରିବା ଶଶିବାବୁଙ୍କର ଦୁଃସାହସ ବୋଲି ଅନେକେ ମନେକରୁଥିଲେ; ମାତ୍ର ଏ କାର୍ଯ୍ୟ ଶଶିବାବୁଙ୍କର ଦୃଢ଼ ଇଚ୍ଛାଶକ୍ତି ଓ ଉଦ୍ୟମର ପ୍ରତୀକ ଥିଲା । 'ନ୍ୟୁ ଓଡିଶା'ର ପ୍ରକାଶନ ପାଇଁ ଗଞ୍ଜାମ ଜିଲ୍ଲାର ରାଜା ମହାରାଜା ଓ ଅନ୍ୟ ବିଶିଷ୍ଟ ଲୋକମାନେ ଛଅ ହଜାର ଟଙ୍କା ଦାନକରିଥିଲେ । ବ୍ରହ୍ମପୁର ଉତ୍କଳ ଆଶ୍ରମରେ ଏକ ସଭାରେ ବିଶିଷ୍ଟ ଆଇନଜୀବୀ ଲିଙ୍ଗରାଜ ପାଣିଗ୍ରାହୀ ଏହି ଟଙ୍କା ଶଶିବାବୁଙ୍କୁ ପ୍ରଦାନ କରିଥିଲେ । ସେ ସଭାରେ ଖଲ୍ଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଦେବ, ମାନଧାତା ଗୋରାଚାନ୍ଦ ପଟ୍ଟନାୟକ ଏବଂ ଉମାଚରଣ ପଟ୍ଟନାୟକ ପ୍ରଭୃତି ବିଶିଷ୍ଟ ଲୋକମାନେ ଉପସ୍ଥିତ ଥିଲେ ।

ନ୍ୟୁ ଓଡିଶା ଦିଲ୍ଲୀ, ଉତ୍ତରପ୍ରଦେଶ, ବିହାର, ବଙ୍ଗଳା, ମାଡ୍ରାଜ୍, ମହୀଶୂର, କେରଳ ପ୍ରଭୃତି ଭାରତୀୟ ରାଜ୍ୟମାନଙ୍କ ବ୍ୟତୀତ ଭାରତ ବାହାରେ ରେଙ୍ଗୁନ ସହରକୁ ମଧ ଯାଉଥିଲା । ଓଡ଼ିଶା ଏବଂ ଓଡ଼ିଶା ବାହାରେ ଅନ୍ୟ ପ୍ରଦେଶମାନଙ୍କର ଅନେକ ବିଶିଷ୍ଟ ଲେଖକ ଏଥିରେ ଲେଖୁଥିଲେ । ଓଡ଼ିଶାର ନିରଞ୍ଜନ ପଟ୍ଟନାୟକ, ଲିଙ୍ଗରାଜ ପାଣିଗ୍ରାହୀ, ଭୁବନାନନ୍ଦ ଦାସ, ଶ୍ରୀକୃଷ୍ଣ ମହାପାତ୍ର, ଲକ୍ଷ୍ମୀଧର ମହାନ୍ତି, ବ୍ରଜ ସୁନ୍ଦର ଦାସ ଓ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ପ୍ରଭୃତି ବିଶିଷ୍ଟ ବ୍ୟକ୍ତିମାନଙ୍କ ସମେତ ବଙ୍ଗଳାର ହରଦୟାଲ ନାଗ, ବିହାରର ସଚ୍ଚିଦାନନ୍ଦ ସିହ୍ନା, ମାଡ୍ରାଜର ସି. ଆର. ରେଡ୍ଡୀ, ମହୀଶୂରର ଦେଓ୍ୱାନ ଇସମାଇଲ ମିର୍ଜା ପ୍ରଭୃତି ବିଶିଷ୍ଟ ଲୋକମାନେ ଏଥିରେ ଲେଖୁଥିଲେ । ଆର୍ଥିକ ଦୁଃସ୍ଥିତି ମଧ୍ୟରେ ଆଶା ଓ ନ୍ୟୁ ଓଡିଶା ଦୁଇଟିଯାକ ପତ୍ରିକା ନିୟମିତ ଭାବରେ ପ୍ରକାଶପାଉଥିଲା ।

୧୯୩୪ ମସିହା ଫେବୃୟାରୀ ମାସ ୪ ତାରିଖରେ ଉତ୍କଳ-ଗୌରବ ମଧୁସୂଦନ ଦାସଙ୍କର ତିରୋଧାନ ହେଲା । ସେ ଯୁବକ ଅବସ୍ଥାରୁ ଉତ୍କଳ ସମ୍ମିଳନୀ କାର୍ଯ୍ୟ ସମେତ ସବୁ ଦେଶହିତକର କାର୍ଯ୍ୟରେ ଶଶିବାବୁଙ୍କର ଗୁରୁ ଥିଲେ । ତାଙ୍କର ମୃତ୍ୟୁରେ ଶଶିବାବୁ ନ୍ୟୁ ଓଡ଼ିଶାରେ To the Memory of the Departed Soul ଶିରୋନାମାରେ ଏକ ଦୀର୍ଘ ଶ୍ରଦ୍ଧାଞ୍ଜଳି ଲେଖା ଲେଖିଥିଲେ । ସେଥିରେ ସେ ମଧୁବାବୁଙ୍କୁ ତାଙ୍କ ଜୀବନର ଗୁରୁଭାବେ ଶ୍ରେଷ୍ଠ ସମ୍ମାନ ଦେଇଥିଲେ । ସେ ଲେଖିଥିଲେ ଯେ, ସେ ମଧୁବାବୁଙ୍କଠାରୁ ଜନସେବା ଶିକ୍ଷାକରିଥିଲେ ଏବଂ ତାଙ୍କଠାରୁହିଁ ଦେଶସେବା ଓ ଜନସେବା ତାଙ୍କ ଜୀବନର ବ୍ରତ କରିବାପାଇଁ ଦୀକ୍ଷା ନେଇଥିଲେ । ତାଙ୍କର ସୁଖ ଓ ଦୁଃଖର ସାଥୀ ଓ ଗୁରୁଙ୍କ ବିୟୋଗରେ ସେ ଗଭୀର ଦୁଃଖ ପ୍ରକାଶ କରିଥିଲେ ।

୧୯୩୦ ମସିହା ସମୟରେ ବ୍ରହ୍ମଦେଶରେ ପଚାଶ ହଜାର ଓଡିଆଙ୍କ ମଧ୍ୟରେ କୋଡ଼ିଏ ହଜାର ଗଞ୍ଜାମବାସୀ ଥିଲେ । ସେମାନେ ଗୋପାଳପୁର ବନ୍ଦରଠାରୁ ବ୍ରହ୍ମଦେଶର ବିଭିନ୍ନ

ବନ୍ଦରକୁ ବ୍ରିଟିଶ ନାଭିଗେସନ କମ୍ପାନୀ ଜାହାଜ 'ଚିଲିକା' ଏବଂ ସିନ୍ଧିଆ କମ୍ପାନୀ ଜାହାଜ 'ଜଳଦୁର୍ଗା'ରେ ଯିବା-ଆସିବା କରୁଥିଲେ । ପ୍ରତି ପନ୍ଦର ଦିନେ ଜାହାଜ ସବୁ ଯାଉଥିଲା ଏବଂ ଆସୁଥିଲା । ଶଶିବାବୁ ସିନ୍ଧିଆ କମ୍ପାନୀର ଯାତ୍ରୀମାନଙ୍କ ପାଇଁ ଏଜେଣ୍ଟ ଭାବରେ ତାଙ୍କର ସୁବିଧା ଅସୁବିଧା ବୁଝୁଥିଲେ ।

ସେ ଯାତ୍ରୀଭଡ଼ା ୧୨ ଟଙ୍କାରୁ ଛଅଅଣା ପଇସା କମିସନି ହିସାବରେ ପାଉଥିଲେ । ସେ ପାଉଥିବା ଟଙ୍କା 'ଆଶା' ଓ 'ନ୍ୟୁ ଓଡ଼ିଶା' ପାଇଁ ଖର୍ଚ୍ଚ ହେଉଥିଲା । ୧୯୩୪ ମସିହା ମାର୍ଚ୍ଚ ମାସ ୨୪ ତାରିଖରେ ଗଞ୍ଜାମବାସୀ ଯାତ୍ରୀଙ୍କର ସୁବିଧା ଅସୁବିଧା ବୁଝିବା ପାଇଁ ସେ ବ୍ରହ୍ମଦେଶ ଯାଇଥିଲେ । ଯିବା ପୂର୍ବରୁ ମାର୍ଚ୍ଚ ୨୪ ତାରିଖରେ ଶଙ୍କରପୁର ସ୍କୁଲରେ ଗୋଟିଏ ସଭାରେ ବହୁ ଗଣ୍ୟମାନ୍ୟ ବ୍ୟକ୍ତି ତାଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ଓକିଲ ମଧୁସୂଦନ ପାଣିଗ୍ରାହୀ ତାଙ୍କୁ 'ଦରିଦ୍ର-ବନ୍ଧୁ' ଆଖ୍ୟା ଦେଇଥିଲେ ।

ସେ ବ୍ରହ୍ମଦେଶରେ ଦୁଇ ସପ୍ତାହ ରହିଥିଲେ । ସେତେବେଳେ ବ୍ରହ୍ମଦେଶର ଓଡ଼ିଆମାନଙ୍କ ମଧ୍ୟରେ ବହୁ ସାଂସ୍କୃତିକ ସଂଗଠନ ଗଢ଼ିଉଠିଥିଲା ଏବଂ 'ଲୋକଭାଷା', 'ପ୍ରଭାତ' ପ୍ରଭୃତି ସାପ୍ତାହିକ ପତ୍ରିକାମାନ ପ୍ରକାଶପାଉଥିଲା । ଓଡ଼ିଶାରୁ ଆଶା, ନ୍ୟୁ ଓଡ଼ିଶା ଏବଂ ସମାଜ ପ୍ରଭୃତି ପତ୍ରିକା ବ୍ରହ୍ମଦେଶକୁ ଯାଉଥିଲା । ସେଠାରେ ଯୁବକସଂଘ, ଉତ୍କଳ ଶ୍ରମିକ ସଂଘ ପ୍ରଭୃତି କେତେକ ସଂଗଠନ କାର୍ଯ୍ୟ କରୁଥିଲେ । ଶଶିବାବୁ ସେଠାରେ ଥିବା ସମୟରେ କେତେକ ସଭା ସମିତି ଅନୁଷ୍ଠିତ ହୋଇଥିଲା ଏବଂ ଶଶିବାବୁ କେତେକ ପାଠାଗାର ଉଦ୍‌ଘାଟନ କରିଥିଲେ । ବର୍ମା ପ୍ରାଦେଶିକ ଉତ୍କଳ ସଭା ଏବଂ ବର୍ମା ଓଡ଼ିଶା ଶ୍ରମିକ ସଂଗଠନ ପକ୍ଷରୁ ତାଙ୍କୁ ସମ୍ବର୍ଦ୍ଧନା ଓ ମାନପତ୍ର ଦିଆଯାଇଥିଲା । ବର୍ମାରୁ ଫେରି ଶଶିବାବୁ ଆଶା ଓ ନ୍ୟୁ ଓଡ଼ିଶାରେ ବ୍ରହ୍ମଦେଶରେ ଓଡ଼ିଆମାନଙ୍କର ବିଭିନ୍ନ ସମସ୍ୟା ଉପରେ ଆଲୋଚନାମାନ ପ୍ରକାଶ କରିଥିଲେ ।

ନ୍ୟୁ ଓଡ଼ିଶାରେ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରର ସମ୍ବାଦ, ଦେଶର ବିଭିନ୍ନ ସ୍ଥାନର ଅର୍ଥନୈତିକ, ସାଂସ୍କୃତିକ ଏବଂ ସାମାଜିକ ସମସ୍ୟାମାନଙ୍କ ବିଷୟରେ ଆଲୋଚନା, ବିଭିନ୍ନ ଲୋକମାନଙ୍କର ଅଭିଭାଷଣ ପ୍ରଭୃତି ପ୍ରକାଶ ପାଉଥିଲା । ଅଧିକାଂଶ ବିଜ୍ଞାପନ ଓଡ଼ିଶା ବାହରୁ ଆସୁଥିଲା । ପତ୍ରିକାର କଳେବର ଆଠ ପୃଷ୍ଠା ଥିଲା ଏବଂ ପତ୍ରିକାଟି ଓଡ଼ିଶାର ସର୍ବାଙ୍ଗୀଣ ଉନ୍ନତି ପାଇଁ ଉତ୍ସର୍ଗ ହୋଇଥିଲା । ଏ ରାଜ୍ୟର ବିଭିନ୍ନ ସମସ୍ୟା ପ୍ରତି ବ୍ରିଟିଶ ସରକାରଙ୍କର ଦୃଷ୍ଟି ଆକର୍ଷଣ କରିବା ଏବଂ ସେ ସବୁ ସମସ୍ୟାର ସମାଧାନର ପନ୍ଥା ପ୍ରତି ଆଲୋକପାତ କରିବା ପତ୍ରିକାର ଆଭିମୁଖ୍ୟ ଥିଲା ।

୧୯୩୪ ମସିହା ମଇ ମାସରେ ଗାନ୍ଧିଜୀ ଓଡ଼ିଶା ଆସିଥିଲେ । ଶଶିବାବୁ କାଦୁଆ ଆଶ୍ରମଠାରୁ ବୀରପୁରୁଷୋତ୍ତମପୁର ପର୍ଯ୍ୟନ୍ତ ଗାନ୍ଧିଜୀଙ୍କ ସହିତ ପଦଯାତ୍ରା କରିଥିଲେ । ସେ ଗଞ୍ଜାମ ଜିଲ୍ଲାର ଦଣ୍ଡାସିମାନଙ୍କର ଉନ୍ନତି ନିମିତ୍ତ ଗାନ୍ଧିଜୀଙ୍କ ସହିତ ଆଲୋଚନା କରିଥିଲେ । ବ୍ରିଟିଶ ସରକାର ଦଣ୍ଡାସିମାନଙ୍କୁ ଦାଗୀ ବୋଲି କରିଥିବା ଘୋଷଣାକୁ ରଦ୍ଦ କରିବାକୁ ସେ ଗାନ୍ଧିଜୀଙ୍କୁ ଅନୁରୋଧ କରିଥିଲେ ।

୧୯୩୬ ମସିହା ଅପ୍ରେଲ ପହିଲା ତାରିଖରେ ନୂତନ ଓଡ଼ିଶା ପ୍ରଦେଶ ଗଠିତ ହେଲା । ରେଭେନ୍ସା କଲେଜ ହଲ୍‌ରେ ଗୋଟିଏ ସ୍ୱତନ୍ତ୍ର ସଭାରେ ସାର୍ ଅଷ୍ଟିନ୍ ହବାକ୍ ଗଭର୍ଣ୍ଣର ହିସାବରେ ଦାୟିତ୍ୱ ଗ୍ରହଣ କରିଥିଲେ । ଗଭର୍ଣ୍ଣରଙ୍କର ଗୋଟିଏ ପରାମର୍ଶଦାତା କମିଟି ଗଠିତ ହୋଇଥିଲା । ବିହାର-ଓଡ଼ିଶା ଏବଂ ମାନ୍ଦ୍ରାଜ ବିଧାନ ପରିଷଦର ଓଡ଼ିଆ ସଭ୍ୟମାନେ ସେଥିରେ ସଭ୍ୟ ହୋଇଥିଲେ । ସନ୍ଧ୍ୟାରେ ବାରବାଟୀ ଦୁର୍ଗରେ ଗୋଟିଏ ବନ୍ଧୁମିଳନ ପାରଳା ମହାରାଜା ଆୟୋଜନ କରିଥିଲେ । ଏହି ଉପଲକ୍ଷେ ଦୈନିକ ଆଶାର ଗୋଟିଏ ସ୍ୱତନ୍ତ୍ର ଓଡ଼ିଶା ବିଶେଷାଙ୍କ ପ୍ରକାଶିତ ହୋଇଥିଲା । ସେଥିରେ ଓଡ଼ିଶାର ଇତିହାସ, ଓଡ଼ିଆମାନଙ୍କର ଦେଶମିଶ୍ରଣ ଆନ୍ଦୋଳନ; ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି, ପର୍ବପର୍ବାଣି, ଐତିହ୍ୟ ଏବଂ ପରମ୍ପରା ଉପରେ ଆଧାରିତ ବହୁ ଲେଖା ପ୍ରକାଶ ପାଇଥିଲା ଏବଂ ବହୁ ବିଶିଷ୍ଟ ଲେଖକ ସେଥିରେ ଲେଖିଥିଲେ । ଶଶିବାବୁ ସଂପାଦକୀୟରେ ମଧୁସୂଦନ, ଗୋପବନ୍ଧୁ, ଚିକିଟି ରାଜା ଗୌରଚନ୍ଦ୍ର ଦେବ ପ୍ରଭୃତିଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଦେଇଥିଲେ ଏବଂ ବିଭିନ୍ନ ପ୍ରଦେଶରେ ରହିଯାଇଥିବା ଓଡ଼ିଆମାନଙ୍କ ପାଇଁ ଦୁଃଖ ପ୍ରକାଶ କରିଥିଲେ । ନୂତନ ଓଡ଼ିଶା ପ୍ରଦେଶ ଗଠନ ପରେ ବିହାର, ବଙ୍ଗଳା, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜରେ ବହୁ ଓଡ଼ିଆ ରହିଗଲେ । ସେମାନେ ସେଠାରେ ଓଡ଼ିଆ ଭାଷା ଓ ସଂସ୍କୃତିକୁ ବଞ୍ଚାଇରଖିବାକୁ ବାର୍ତ୍ତା 'ନ୍ୟୁ ଓଡ଼ିଶା' ଏବଂ 'ଆଶା' ମାଧ୍ୟମରେ ଶଶିବାବୁ ପ୍ରଚାର କରୁଥିଲେ ।

ନୂତନ ଓଡ଼ିଶା ପ୍ରଦେଶ ଗଠନ ପରେ ପ୍ରଦେଶର ରାଜଧାନୀ କେଉଁ ସ୍ଥାନରେ ସ୍ଥାପିତ ହେବ, ସେ ବିଷୟରେ ଆଲୋଚନା ଚାଲିଲା । ଗଞ୍ଜାମ ଅଞ୍ଚଳର ନେତାମାନେ ଗୋପାଳପୁର ନିକଟରେ ବ୍ରହ୍ମପୁର, ଛତ୍ରପୁର ମଧ୍ୟରେ ରଙ୍ଗେଇଲୁଣ୍ଡାରେ ପ୍ରଦେଶର ରାଜଧାନୀ ସ୍ଥାପନପାଇଁ ଦାବି କରୁଥିଲେ । ଅନ୍ୟ ଦିଗରେ କଟକ ଅଞ୍ଚଳର ଲୋକମାନେ ରାଜଧାନୀ ପୂର୍ବପରି କଟକରେ ରହିବାକୁ ଆନ୍ଦୋଳନ କରୁଥିଲେ । କେତେକ ଲୋକ ଖୋର୍ଦ୍ଧା ଓ ଅନୁଗୁଳ ପାଇଁ ମଧ୍ୟ ଯୁକ୍ତି କରୁଥିଲେ । ରାଜଧାନୀର ସ୍ଥାନ ନିର୍ବାଚନ ପାଇଁ ସରକାର ଗୋଟିଏ ସ୍ଥାନ ନିରୂପଣ କମିଟି (Site Selection Committee) ଗଠନ କରିଥିଲେ । ଶଶିବାବୁ ମୂଳରୁ ବ୍ରହ୍ମପୁର, ଛତ୍ରପୁର ଏବଂ ଗୋପାଳପୁର ମଧ୍ୟବର୍ତ୍ତୀ ସ୍ଥାନ ରଙ୍ଗେଇଲୁଣ୍ଡା ସପକ୍ଷରେ 'ଆଶା' ଓ 'ନ୍ୟୁ ଓଡ଼ିଶା' ମାଧ୍ୟମରେ ଜନମତ ସୃଷ୍ଟି କରୁଥିଲେ । ତାଙ୍କ ମତରେ ସେ ସ୍ଥାନରେ ବନ୍ୟାଭୟରହିତ ବିସ୍ତୀର୍ଣ୍ଣ ବେଳାଭୂମି ରାଜଧାନୀ ପାଇଁ ଉତ୍କୃଷ୍ଟ ସ୍ଥାନ ଥିଲା । ଋଷିକୁଲ୍ୟା ନଦୀରୁ ରାଜଧାନୀ ପାଇଁ ଜଳଯୋଗାଣର ସୁବିଧା ଥିଲା । ଶଶିବାବୁ ସେ ସ୍ଥାନକୁ ଉଦୟନଗର ବୋଲି କହୁଥିଲେ । ଦକ୍ଷିଣ-ଓଡ଼ିଶାର ତୁଙ୍ଗ ନେତା ପାରଳା ମହାରାଜା ଏବଂ ବିଶ୍ୱନାଥ ଦାସ ଉଦୟନଗରର ନିର୍ବାଚନ ପାଇଁ ବିଶେଷ ଆଗ୍ରହୀ ନ ଥିଲେ । ମାତ୍ର ଶଶିବାବୁ, ଲିଙ୍ଗରାଜ ପାଣିଗ୍ରାହୀ ଓ ଗଞ୍ଜାମର ଅନ୍ୟ ନେତାମାନେ ଉଦୟନଗର ପାଇଁ ଦୃଢ଼ ଯୁକ୍ତି ବାଢୁଥିଲେ । ଏ ବିଷୟରେ ଶଶିବାବୁ ପ୍ରଭୃତି ଗଭର୍ଣ୍ଣର ଏବଂ ଚିଫ୍ ସେକ୍ରେଟାରୀ ମାନସ୍ ପିଲ୍‌ଡଙ୍କ ସହିତ ସାକ୍ଷାତକରି ଉଦୟନଗର ସପକ୍ଷରେ ଦାବି ଉପସ୍ଥାପନ କରିଥିଲେ । ସ୍ଥାନ ନିରୂପଣ କମିଟି ଶେଷରେ ରଙ୍ଗେଇଲୁଣ୍ଡା ବା ଉଦୟନଗର ସପକ୍ଷରେ ମତ ଦେଇଥିଲେ । ମାତ୍ର କଟକ

ଅଞ୍ଚଳରେ ପ୍ରବଳ ଜନମତ ହେତୁ ୧୯୩୭ ମସିହାରେ ଓଡ଼ିଶା ବିଧାନସଭାରେ କଟକ ଜିଲ୍ଲାର ଚୌଦ୍ୱାର ଓଡ଼ିଶାର ରାଜଧାନୀ ହେବ ବୋଲି ପ୍ରସ୍ତାବ ପାସ୍ ହୋଇଥିଲା । ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯିବା ହେତୁ ରାଜଧାନୀ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ନ ଥିଲା । ଯୁଦ୍ଧ ପରେ ହରେକୃଷ୍ଣ ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ । ତାଙ୍କ ଉଦ୍ୟମରେ ଓଡ଼ିଶା ବିଧାନସଭାରେ ଭୁବନେଶ୍ୱର ପ୍ରଦେଶର ରାଜଧାନୀ ହେବାପାଇଁ ପ୍ରସ୍ତାବ ଆଉ ଥରେ ପାସ୍ ହୋଇଥିଲା ଏବଂ ୧୯୪୮ ମସିହାରୁ ଭୁବନେଶ୍ୱରରେ ରାଜଧାନୀ ନିର୍ମାଣ ହୋଇଥିଲା ।

୧୯୩୬ ସମୟରୁ ଆଶା ପ୍ରେସରେ ସର୍ବଦା ଅଭାବ ଓ ଅନଟନ ଲାଗିରହିଥିଲା ଏବଂ ଆଶା ଓ ନ୍ୟୁ ଓଡ଼ିଶା ଦୁଇଗୋଟି କାଗଜକୁ ବଞ୍ଚାଇରଖିବାକୁ ଶଶିବାବୁ ସର୍ବଦା ଚିନ୍ତିତ ଥିଲେ । ପ୍ରେସ୍‌ର ଅଭାବ ଦୂର କରିବା ପାଇଁ ସେ ନିଜର କେତେକ ଭୂସମ୍ପତ୍ତି ବିକ୍ରିକରିଥିଲେ । ପ୍ରେସ୍‌ର ଅଭାବ ସହିତ ସେତେବେଳେ ତାଙ୍କର ସ୍ୱାସ୍ଥ୍ୟ ମଧ୍ୟ ଭଲରହୁନଥିଲା । ମାତ୍ର ସମସ୍ତ ବିପର୍ଯ୍ୟୟ ସତ୍ତ୍ୱେ, ସେ କାଗଜଦୁଇଟିକୁ ବଞ୍ଚାଇରଖିଥିଲେ ଏବଂ ସେମାନଙ୍କର ଆଭିମୁଖ୍ୟ ପରିବର୍ତ୍ତନ କରିନଥିଲେ ।

୧୯୩୬ ମସିହାରେ ବ୍ରହ୍ମପୁରଠାରେ କୁଖ୍ୟାତ ବ୍ରୁକ୍ ମର୍ଡ଼ର କେସ୍ ହୋଇଥିଲା । ସେଥିରେ ଆସାମୀ ପ୍ରଥମେ ପ୍ରମାଣ ଅଭାବରୁ ଖଲାସ ହୋଇଥିଲା; ମାତ୍ର ପରେ ନ୍ୟୁ ଓଡ଼ିଶାରେ ସେ ବିଷୟରେ ବହୁତଥ୍ୟ ପ୍ରକାଶିତ ହେବା ପରେ କେସ୍ ଆଉ ଥରେ ବିଚାର କରାଯାଇ ଆସାମୀକୁ ଫାଶୀଦଣ୍ଡ ଦିଆଯାଉଥିଲା । ଆସାମୀର ପ୍ରାଣଭିକ୍ଷା ପରେ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସଙ୍କ ସୁପାରିସ୍‌ରେ ଦଣ୍ଡ କୋହଳ କରାଯାଇ ଆସାମୀକୁ ଯାବଜ୍ଜୀବନ କାରାଦଣ୍ଡ ହୋଇଥିଲା । ନ୍ୟୁ ଓଡ଼ିଶାର ଲେଖା ବିଶ୍ୱନାଥ ଦାସଙ୍କ ବିରୁଦ୍ଧରେ ଶିକ୍ଷିତମହଲରେ ସନ୍ଦେହ ସୃଷ୍ଟି କରିଥିଲା ।

୧୯୩୮ ମସିହାରେ ଗଞ୍ଜାମର ଅସ୍ଥାୟୀ କଲେକ୍ଟର ଅନନ୍ତରାମ ରଥ ନ୍ୟୁ ଓଡ଼ିଶାରେ ଲେଖାପାଇଁ ଶଶିବାବୁଙ୍କ ବିରୁଦ୍ଧରେ ଗୋଟିଏ ମାନହାନି ମକଦ୍ଦମା କରିଥିଲେ । ଜିଲ୍ଲାଜଜ୍‌ଙ୍କ ମତ ନନେଇ କଲେକ୍ଟର ଉମାଚରଣ ପଟ୍ଟନାୟକଙ୍କୁ ସରକାରୀ ଓକିଲ ଭାବରେ ନିଯୁକ୍ତ କରିଥିଲେ । ପୂର୍ବ କଲେକ୍ଟର ଓ ଜିଲ୍ଲାଜଜ ଲିଙ୍ଗରାଜ ପାଣିଗ୍ରାହୀଙ୍କ ନାମ ସରକାରୀ ଓକିଲ ନିଯୁକ୍ତି ପାଇଁ ସୁପାରିସ୍ କରିଥିଲେ । ନ୍ୟୁ ଓଡ଼ିଶାରେ ସମାଲୋଚନା କରାଗଲା ଯେ, ଅସ୍ଥାୟୀ କଲେକ୍ଟର ଅନନ୍ତରାମ ରଥ ନିଜ ଅସ୍ଥାୟୀ ପଦବୀରେ ଆଉ କିଛି ଦିନ ରହିବା ପାଇଁ ବିଶ୍ୱନାଥ ଦାସଙ୍କ ଚାପରେ ଜିଲ୍ଲାଜଜ୍‌ଙ୍କ ମତ ନନେଇ ଉମାଚରଣ ପଟ୍ଟନାୟକଙ୍କୁ ନିଯୁକ୍ତି ଦେଇଛନ୍ତି । ସେଥି ନିମିତ୍ତ ଅନନ୍ତରାମ ରଥ ଶଶିବାବୁଙ୍କ ନାମରେ ମାନହାନି ମକଦ୍ଦମା କରିଥିଲେ । ତଳକୋର୍ଟରେ ଶଶିବାବୁ ଜିତିଥିଲେ; ମାତ୍ର ତା ବିରୁଦ୍ଧରେ ଓଡ଼ିଶା ସରକାର ହାଇକୋର୍ଟରେ ଅପିଲ୍ କରିଥିଲେ ଏବଂ ହାଇକୋର୍ଟ ଶଶିବାବୁଙ୍କୁ ଶହେଟଙ୍କା ଜୋରିମାନା ଦଣ୍ଡ କରିଥିଲେ ।

୧୯୩୮ ମସିହାରେ ଗୋଦାବରୀଶ ମହାପାତ୍ର ଆଶା ପ୍ରେସରୁ ନିଜ ସମ୍ପାଦକତ୍ୱରେ, ସମାଲୋଚନାମୂଳକ ମାସିକ ପତ୍ରିକା 'ନିଆଁଖୁଣ୍ଟା'ର ପ୍ରକାଶନ ଆରମ୍ଭ କରିଥିଲେ ।

ଗୋଦାବରୀଶ ମହାପାତ୍ର ପ୍ରଥମେ ଆଶା କାଗଜର ସହସମ୍ପାଦକ ଥିଲେ । ସେଥିରୁ ଅବ୍ୟାହତି ନେଇ ବାଣପୁରଠାରେ 'ବନଫୁଲ' ପତ୍ରିକାର ସମ୍ପାଦକ ହୋଇଥିଲେ । ସେଥିରେ ସେ ସନ୍ତୁଷ୍ଟ ନ ହୋଇ ବ୍ରହ୍ମପୁର ଫେରି ଆଶା ପ୍ରେସ୍‌ରୁ 'ନିଆଁଖୁଣ୍ଟା' ପ୍ରକାଶନ ଆରମ୍ଭ କରିଥିଲେ । ୧୯୩୮ ମସିହା ମାର୍ଚ୍ଚ ମାସ ବାର ତାରିଖରେ 'ନିଆଁଖୁଣ୍ଟା'ର ପ୍ରଥମ ସଂଖ୍ୟା ପ୍ରକାଶିତ ହୋଇଥିଲା । ଅଳ୍ପ କାଳ ମଧ୍ୟରେ ଏହା ଖୁବ୍ ଲୋକପ୍ରିୟ ହୋଇଗଲା ପରେ ଗୋଦାବରୀଶ ବାବୁ ନିଆଁଖୁଣ୍ଟାକୁ ବ୍ରହ୍ମପୁରରୁ କଟକକୁ ସ୍ଥାନାନ୍ତରିତ କରିଥିଲେ ।

୧୯୩୮ ମସିହା ଅପ୍ରେଲ ୧୬-୧୭ ତାରିଖରେ ମଞ୍ଜୁଷାରେ ଉତ୍କଳ ସମ୍ମିଳନୀର ୪୪ତମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ସେ ଅଧିବେଶନରେ ସଭାପତି ହୋଇଥିଲେ । ଶଶିବାବୁ ଉଦ୍ୟୋକ୍ତା ଭାବରେ ସ୍ୱାଗତ ଭାଷଣ ଦେଇଥିଲେ । ସେଥିରେ ସେ ଓଡ଼ିଶା ପ୍ରଦେଶ ଗଠନ ପରେ ବାହାରେ ରହିଯାଇଥିବା ଓଡ଼ିଆମାନଙ୍କୁ ନିରୁତ୍ସାହିତ ନ ହୋଇ ରହିଥିବା ଅଞ୍ଚଳମାନଙ୍କରେ ଓଡ଼ିଆ ଭାଷା ଓ ସଂସ୍କୃତିକୁ ବଞ୍ଚାଇ-ରଖିବାକୁ ଆହ୍ୱାନ ଦେଇଥିଲେ ।

ଆଶା ପ୍ରେସ୍‌ର କ୍ରମାଗତ ଆର୍ଥିକ ଅନଟନ ହେତୁ ୧୯୩୭ ମସିହାରେ ଶଶିବାବୁ ଆଶା ଓ ନ୍ୟୁ ଓଡ଼ିଶାକୁ ସମବାୟ ସୂତ୍ରରେ ପ୍ରକାଶ କରିବାକୁ ଇଚ୍ଛାକରିଥିଲେ । ସେଥିପାଇଁ ଖଲ୍ଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ, ଜୟପୁର ମହାରାଜା ବିକ୍ରମ ଦେବ ବର୍ମା, ସିଂହଭୂମିର ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ପ୍ରଭୃତିଙ୍କ ସହିତ ଯୋଗାଯୋଗ କରିଥିଲେ । ପ୍ରତି ଅଂଶର ଦାମ୍ ମାତ୍ର ଏକଶହ ଟଙ୍କା ରଖିଥିଲେ ଏବଂ କେତେକ ଲୋକ ମଧ୍ୟ ଅଂଶ କିଣିଥିଲେ । ନିଜର ବ୍ୟକ୍ତିଗତ ସମ୍ପତ୍ତି ଆଶା ପ୍ରେସ୍‌କୁ ୨୬୦୦୦ ଟଙ୍କାରେ ସେ ସଂସ୍ଥାକୁ ବିକ୍ରି କରିବାକୁ ଶଶିବାବୁ ପ୍ରସ୍ତାବ କରିଥିଲେ । ମାତ୍ର ସେ ପ୍ରକଳ୍ପ କାର୍ଯ୍ୟକାରୀ ହୋଇପାରି ନ ଥିଲା ।

୧୯୩୯ ମସିହା ସେପ୍ଟେମ୍ବର ମାସରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ଓଡ଼ିଶାରେ ବିଶ୍ୱନାଥ ଦାସ ମନ୍ତ୍ରିମଣ୍ଡଳ ନଭେମ୍ବର ମାସ ୬ ତାରିଖରେ ଇସ୍ତଫା ଦେଲେ ଏବଂ ରାଜ୍ୟରେ ରାଜ୍ୟପାଳଶାସନ ଜାରିହେଲା । ସେତେବେଳେ ଯୁଦ୍ଧନୀତି ପ୍ରଚାର ଏବଂ ସରକାରଙ୍କୁ ସମର୍ଥନ କରୁଥିବା ପତ୍ରପତ୍ରିକାର ଆବଶ୍ୟକତା ଅନୁଭୂତ ହେଉଥିଲା । କିନ୍ତୁ କୌଣସି ଜାତୀୟବାଦୀ ପତ୍ରିକା ଭାରତରେ ବ୍ରିଟିଶ ସରକାରଙ୍କର ଯୁଦ୍ଧନୀତିକୁ ସମର୍ଥନ କରୁ ନ ଥିଲେ । ସେତେବେଳେ ଭାରତର ସ୍ୱାଧୀନତା ଆନ୍ଦୋଳନ ଚରମ ସୀମାରେ ପହଞ୍ଚିଥିଲା । ଆଶା ପ୍ରେସ୍‌ର ଆର୍ଥିକ ଅଭାବ ଏବଂ ଶଶିବାବୁଙ୍କର ସ୍ୱାସ୍ଥ୍ୟର ଅବନତିର ସୁଯୋଗ ନେଇ ଓଡ଼ିଶା ସରକାରଙ୍କ ଚିଫ୍ ସେକ୍ରେଟାରୀ ମାନସ୍‌ଫିଲ୍ଡ ସାହେବ ତାଙ୍କୁ କରାୟତ୍ତକଲେ ଏବଂ ଆଶା ପ୍ରେସକୁ କଟକକୁ ସ୍ଥାନାନ୍ତରିତ କରିବା ପାଇଁ ତାଙ୍କୁ ପ୍ରବର୍ତ୍ତାଇଲେ । ସେ ସ୍ଥାନାନ୍ତର ଖର୍ଚ୍ଚ ଚାରି ହଜାର ଟଙ୍କା ଏବଂ ପ୍ରେସ ପରିଚାଳନା ପାଇଁ ମାସକୁ ତିନି ହଜାର ଟଙ୍କା ଦେବାକୁ ପ୍ରସ୍ତାବ ଦେଲେ । କଟକ ଗଲେ ପତ୍ରିକାର ଉନ୍ନତି ହେବ ବୋଲି ଆଶା କରି ଶଶିବାବୁ ରାଜି ହୋଇଗଲେ ।

ଆଶା ପ୍ରେସ୍ କଟକର କାଫଲା ପାଣ୍ଡି ଅଞ୍ଚଳରେ ଥିବା ଖଲ୍ଲିକୋଟ ରାଜାଙ୍କ କୋଠାରେ ଚାଲିବାପାଇଁ ଖଲ୍ଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ ଅନୁମତି ଦେଲେ । ସେତେବେଳକୁ ପ୍ରେସ୍‌ର ପୁରୁଣା କର୍ମଚାରୀ ହାଡୁ ରାୟଗୁରୁ ପ୍ରେସ ଛାଡ଼ିଥିଲେ । ଚିନ୍ତାମଣି ମିଶ୍ର ନୀଳକଣ୍ଠ ଦାସଙ୍କ କଟକର ନବଭାରତ ପ୍ରେସକୁ ଚାଲିଯାଇଥିଲେ । ନିଆଁଖୁଣ୍ଟା କଟକକୁ ସ୍ଥାନାନ୍ତରିତ ହୋଇଯାଇଥିଲା । ଏହିପରି ପରିସ୍ଥିତିରେ ଶଶିବାବୁ 'ଆଶା' ଏବଂ 'ନ୍ୟୁ ଓଡ଼ିଶା'କୁ କଟକକୁ ସ୍ଥାନାନ୍ତରିତ କରିବାକୁ ରାଜିହୋଇଥିଲେ । ୧୯୩୯ ମସିହା ଅକ୍ଟୋବର ମାସରୁ ଦୈନିକ ଆଶା ଏବଂ ନ୍ୟୁ ଓଡ଼ିଶା କଟକରୁ ପ୍ରକାଶିତ ହେଲା । ମାତ୍ର ବ୍ରିଟିଶ ସରକାରଙ୍କୁ ସମର୍ଥନ କରୁଥିବାରୁ ଦୁଇଟିଯାକ ପତ୍ରିକାର ଚାହିଦା କମିଗଲା । ଆଶାର କର୍ମଚାରୀ ନରସିଂହ ଆଚାରୀ ଏବଂ ଚନ୍ଦ୍ରଶେଖର ମହାପାତ୍ର କଟକରେ ରହି ପତ୍ରିକା କଥା ବୁଝୁଥିଲେ । ଶଶିବାବୁ କିଛିଦିନ କଟକରେ ରହିଥିଲେ; ମାତ୍ର ସ୍ୱାସ୍ଥ୍ୟ ଖରାପ ହେବାରୁ ବ୍ରହ୍ମପୁର ଫେରିଆସିଲେ; ପ୍ରତି ମାସରେ ଥରେ ଦୁଇଥର କଟକ ଯାଇ ପ୍ରେସ ଓ ପତ୍ରିକା କଥା ବୁଝିଆସୁଥିଲେ ।

କିନ୍ତୁ ସ୍ୱାସ୍ଥ୍ୟ ଅଧିକ ଖରାପ ହେବାରୁ ମାସରେ ଥରେ ସୁଦ୍ଧା କଟକ ଯାଇ ପାରିଲେ ନାହିଁ । ଅନ୍ୟ ଦିଗରେ ପତ୍ରିକାଗୁଡ଼ିକ କଟକରେ ରଖି ବ୍ରହ୍ମପୁରଠାରେ ଶାନ୍ତିରେ ରହିପାରିଲେ ନାହିଁ । ତେଣୁ ବ୍ରହ୍ମପୁରଠାରୁ ସାପ୍ତାହିକ ଆଶା ପ୍ରକାଶ କରିବାକୁ ସେ ନିଷ୍ପତ୍ତି କଲେ । ଚନ୍ଦ୍ରଶେଖର ମହାପାତ୍ରଙ୍କୁ ସେ କଟକରୁ ବ୍ରହ୍ମପୁର ଡାକିଆଣିଲେ । ଶଶିଭୂଷଣ ପ୍ରେସ ନାମରେ ଗୋଟିଏ ଛୋଟ ପ୍ରେସ ସ୍ଥାପନ କରି, ପ୍ରତିଷ୍ଠାତା ଶଶିଭୂଷଣ ରଥ, ସଂପାଦକ ଶରତଚନ୍ଦ୍ର ମହାପାତ୍ର ଏବଂ ପ୍ରକାଶକ ଚନ୍ଦ୍ରଶେଖର ମହାପାତ୍ର ନାମରେ ସାପ୍ତାହିକ ଆଶା ପ୍ରକାଶ କରିବା ଆରମ୍ଭ କଲେ । ମାତ୍ର ଅଳ୍ପକାଳ ପରେ ୧୯୪୩ ମସିହା ମାର୍ଚ୍ଚ ମାସ ୧୯ ତାରିଖରେ ତାଙ୍କର ତିରୋଧାନ ହେଲା ।

ତାଙ୍କର ମୃତ୍ୟୁପରେ ଉତ୍ତରାଧିକାରୀ ସୂତ୍ରରେ ଆଶା ପ୍ରେସ ଓ ପତ୍ରିକାର ସମସ୍ତ ଦାୟିତ୍ୱ ତାଙ୍କ ପତ୍ନୀ ଅନ୍ନପୂର୍ଣ୍ଣା ଦେବୀଙ୍କ ଉପରେ ପଡ଼ିଲା । ତାଙ୍କ ପ୍ରତିନିଧି ଭାବରେ ତାଙ୍କର ଜ୍ୱାଇଁ ଡାକ୍ତର ବଳଭଦ୍ର ମିଶ୍ର କଟକରୁ ପ୍ରକାଶିତ ହେଉଥିବା ଦୈନିକ ଆଶା ଓ ନ୍ୟୁ ଓଡ଼ିଶା ସମେତ ବ୍ରହ୍ମପୁରରୁ ପ୍ରକାଶିତ ହେଉଥିବା ସାପ୍ତାହିକ ଆଶାର ସମସ୍ତ ବିଷୟ ବୁଝାବୁଝି କଲେ । ମାତ୍ର ନିଜ ଚାକିରି ସହିତ ପ୍ରେସ କାର୍ଯ୍ୟ ବୁଝିବାପାଇଁ ଅଧିକ ସମୟ ଦେଇପାରୁନଥିବାରୁ ପତ୍ରିକାଗୁଡ଼ିକର ନିୟମିତ ପ୍ରକାଶନ ବାଧାପ୍ରାପ୍ତହେଲା । ଯୁଦ୍ଧ ଶେଷ ହେବା ପରେ ୧୯୪୬ ମସିହାରେ ହରେକୃଷ୍ଣ ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ସେତେବେଳେ ମଦନଲାଲ୍ ଯାଜୋଡ଼ିଆ ବାରଙ୍ଗରେ କାଚ କାରଖାନା ପ୍ରତିଷ୍ଠା କରିଥିଲେ । ମହତାବଙ୍କ ପରାମର୍ଶରେ ଯାଜୋଡ଼ିଆ ଆଶା ଓ ନ୍ୟୁ ଓଡ଼ିଶା ପତ୍ରିକା ସମେତ ଆଶା ପ୍ରେସ୍‌କୁ କିଣିନେବାକୁ ଚାହିଁଲେ । ବଳଭଦ୍ର ମିଶ୍ର ଅନ୍ନପୂର୍ଣ୍ଣା ଦେବୀଙ୍କ ସହିତ ପରାମର୍ଶ କରି ଦୁଇଟି ସର୍ତ୍ତରେ ପତ୍ରିକାଗୁଡ଼ିକର ସ୍ୱତ୍ୱ ଓ ଆସବାବ୍‌ପତ୍ର ସହିତ ଆଶା ପ୍ରେସକୁ ବିକ୍ରିକରିଦେଲେ । ସର୍ତ୍ତ ଦୁଇଟି ହେଲା (୧) ପତ୍ରିକାଗୁଡ଼ିକର ନିୟମିତ ପ୍ରକାଶନ ବନ୍ଦ ହେବ ନାହିଁ । (୨) ପତ୍ରିକା ଦୁଇଟିରେ ପ୍ରତିଷ୍ଠାତା ଶଶିଭୂଷଣ ରଥଙ୍କ ନାମ ପ୍ରତିଦିନ ପ୍ରକାଶିତ ହେବ । ଶିଳ୍ପପତି ଯାଜୋଡ଼ିଆ କିନ୍ତୁ

ଅନିୟମିତ ଭାବରେ ପତ୍ରିକା ଦୁଇଟି କିଛିକାଳ ପ୍ରକାଶ କରିବାପରେ, ୧୯୫୦ ମସିହାରେ ଦୁଇଟିଯାକ ପତ୍ରିକାକୁ ସଂପୂର୍ଣ୍ଣରୂପେ ବନ୍ଦକରିଦେଲେ । ଆର୍ଥିକ ଅସୁବିଧା ହେତୁ ବ୍ରହ୍ମପୁରରୁ ପ୍ରକାଶିତ ସାପ୍ତାହିକ ଆଶା ମଧ୍ୟ ବନ୍ଦହୋଇଗଲା ।

ତାହାର ୩୧ ବର୍ଷ ପରେ ବୃନ୍ଦାବନ ନାୟକଙ୍କ ଉଦ୍ୟମରେ ୧୯୮୨ ମସିହା ଫେବୃୟାରୀ ଦଶ ତାରିଖରେ ବ୍ରହ୍ମପୁରଠାରୁ ଦୈନିକ ଆଶାର ପୁନଃ ପ୍ରକାଶନ ହେଲା ଏବଂ ଏହି ପତ୍ରିକା ଏବେ ନିୟମିତ ଭାବରେ ପ୍ରକାଶିତ ହେଉଛି । ପ୍ରତିଦିନ ପତ୍ରିକା ଉପରେ ପ୍ରତିଷ୍ଠାତା ଶଶିଭୂଷଣ ରଥ ଏବଂ ସଂସ୍ଥାପକ ବୃନ୍ଦାବନ ନାୟକ ବୋଲି ମୁଦ୍ରିତ ହେଉଛି । ଶଶିବାବୁଙ୍କ ସହକର୍ମୀ ଶ୍ରୀହର୍ଷ ମିଶ୍ର ପୁନଃ ସଂସ୍ଥାପିତ ଆଶାର ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ସମ୍ପାଦକ ଥିଲେ ଏବଂ ଶଶିବାବୁଙ୍କ ସହକର୍ମୀ ଚନ୍ଦ୍ରଶେଖର ମହାପାତ୍ର ପୁନଃ ସଂସ୍ଥାପନ ବର୍ଷଠାରୁ ୧୯୯୫ ମସିହାରେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ପତ୍ରିକାର ଗ୍ରୁପ୍ ଲିଡ଼ର ଥିଲେ ।

ଏହା ହେଉଛି ଶଶିବାବୁଙ୍କ ପ୍ରତିଷ୍ଠିତ ଆଶା ଏବଂ ଅନ୍ୟ ପତ୍ରିକାମାନଙ୍କର ସଂକ୍ଷିପ୍ତ ଇତିହାସ । ଶଶିବାବୁ ସମ୍ବାଦପତ୍ର ମାଧ୍ୟମରେ ଦେଶସେବା କରିଥିଲେ ଏବଂ ଦୈନିକ ଆଶା ପ୍ରତିଷ୍ଠା କାଳରୁ ଓଡ଼ିଆ ଆନ୍ଦୋଳନର ମୁଖପତ୍ରରୂପେ ବ୍ୟବହୃତ ହୋଇଥିଲା । ଗଞ୍ଜାମ ଜିଲ୍ଲାର ଖଲ୍ଲିକୋଟ ରାଜା, ପାରଳା ମହାରାଜା ଏବଂ ଶଶିଭୂଷଣ ରଥ ଓଡ଼ିଆମାନଙ୍କର ଏକତ୍ରୀକରଣ ଏବଂ ସେମାନଙ୍କର ସ୍ୱାର୍ଥରକ୍ଷା ପାଇଁ ଆନ୍ଦୋଳନର ସର୍ବୋଚ୍ଚ ନେତା ଥିଲେ । ଶଶିବାବୁ ୧୯୨୧ ମସିହାରେ ମାନ୍ଦ୍ରାଜ ବିଧାନ ପରିଷଦରେ ସଭ୍ୟ ଥିବା ବେଳେ ଓଡ଼ିଆଭାଷାଭାଷୀ ଅଞ୍ଚଳମାନଙ୍କୁ ଏକଶାସନାଧୀନ କରିବାକୁ ପରିଷଦରେ ଏକ ପ୍ରସ୍ତାବ ଆଗତ କରିଥିଲେ ଏବଂ ୧୯୧୩ ମସିହାରେ ଆଶା ପ୍ରକାଶନ ଆରମ୍ଭରୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପର୍ଯ୍ୟନ୍ତ ଓଡ଼ିଆମାନଙ୍କର ଏକତ୍ରୀକରଣ ଏବଂ ଦେଶମିଶ୍ରଣ ଆଶା କାଗଜର ଆଭିମୁଖ୍ୟ ଥିଲା । ବସ୍ତୁତଃ ଶଶିବାବୁ ଜୀବିତ ଥିବା ପର୍ଯ୍ୟନ୍ତ ଓଡ଼ିଆ ଜାତିର ସ୍ୱାର୍ଥରକ୍ଷା ଏବଂ ସର୍ବବିଧ ଉନ୍ନତି କରିବା ତାଙ୍କ ଜୀବନର ବ୍ରତ ଥିଲା । ସଂପାଦକୀୟ ଅଭିମତରେ ସେ ସର୍ବଦା ନିର୍ଭୀକ ଥିଲେ ଏବଂ ପତ୍ରିକାମାନଙ୍କରେ ସଠିକ ସଂବାଦ ପ୍ରକାଶ କରିବାପାଇଁ ନିଷ୍ଠାବାନ୍ ଥିଲେ । ଆଶା କାଗଜ ପାଇଁ ସେ ବହୁ ଜମିଦାରଙ୍କଠାରୁ ଅର୍ଥ ସାହାଯ୍ୟ ଆଣୁଥିଲେ; ମାତ୍ର ସେମାନଙ୍କର ଅନ୍ୟାୟ କାର୍ଯ୍ୟକୁ ତୀବ୍ର ଭାବରେ ସମାଲୋଚନା କରୁଥିଲେ । ଦୈନିକ ଆଶା ଓଡ଼ିଶାରେ ପ୍ରଥମ ଦୈନିକ ସମ୍ବାଦପତ୍ର ହୋଇଥିଲା ଏବଂ ଶ୍ରୀହର୍ଷ ମିଶ୍ର, ଗୋଦାବରୀଶ ମହାପାତ୍ର, ଚିନ୍ତାମଣି ମିଶ୍ର ଓ ରାମପ୍ରସାଦ ସିଂହ ପ୍ରଭୃତି ସମସ୍ତେ ଆଶା ପ୍ରେସରେ ସାଂବାଦିକତାରେ ତାଲିମ ପାଇଥିଲେ । ଗୌରୀଶଙ୍କର ରାୟ, ନୀଳମଣି ବିଦ୍ୟାରତ୍ନ, ଗୋପବନ୍ଧୁ ଦାସ ପ୍ରଭୃତିଙ୍କ ସହିତ ଶଶିବାବୁ ଓଡ଼ିଶାର ଆଦି-ସାଂବାଦିକମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ ।

**ଓଡ଼ିଆ ଜାତିର ଏକତ୍ରୀକରଣ ଏବଂ ଦେଶମିଶ୍ରଣ ଆନ୍ଦୋଳନରେ ଶଶିବାବୁଙ୍କ ଭୂମିକା –**

ଆଶା ପତ୍ରିକାର ଇତିହାସ ବର୍ଣ୍ଣନାରେ ଓଡ଼ିଆ ଜାତିର ଏକତ୍ରୀକରଣ ଏବଂ ଦେଶ-ମିଶ୍ରଣ ଆନ୍ଦୋଳନରେ ଶଶିବାବୁଙ୍କ ଅବଦାନ ବିଶଦଭାବରେ ବର୍ଣ୍ଣିତ ହୋଇଛି । ତାହାକୁ

ବିହଙ୍ଗାବଲୋକନ କଲେ ଜଣାଯାଏ ଯେ, ୧୯୦୮ ମସିହାରେ ଉତ୍କଳ ଟାନେରୀରେ ପ୍ରାୟ ଏକ ବର୍ଷ କାର୍ଯ୍ୟ କରିବା ସମୟରେ ଶଶିବାବୁ ମଧୁସୂଦନ ଦାସଙ୍କଠାରୁ ଓଡ଼ିଆ ଜାତିର ସମସ୍ୟାମାନ ବୁଝିଥିଲେ । ସେହିଦିନଠାରୁ ସେ ମଧୁବାବୁଙ୍କୁ ଗୁରୁରୂପେ ଗ୍ରହଣ କରିଥିଲେ ଏବଂ ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷାପାଇଁ କାମ କରିବାକୁ ପ୍ରେରଣା ପାଇଥିଲେ ।

ତା'ପରେ ସେ କଲିକତାରେ ଓଡ଼ିଆ ଶ୍ରମିକ ସଂଗଠନମାନଙ୍କ ସଂପର୍କରେ ଆସିଥିଲେ ଏବଂ ସେଠାରେ ସେ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ଏବଂ କୃପାସିନ୍ଧୁ ପ୍ରଭୃତି ସତ୍ୟବାଦୀର ପଞ୍ଚସଖାଙ୍କୁ ଭେଟିଥିଲେ । ସେମାନଙ୍କ ସହିତ ମିଶି ଓଡ଼ିଆମାନଙ୍କର ହୀନମନ୍ୟତା ଦୂରକରିବା ଏବଂ ସେମାନଙ୍କର ସ୍ୱାଭିମାନ ଜାଗ୍ରତ କରିବା ପାଇଁ କାର୍ଯ୍ୟ କରିଥିଲେ । ସତ୍ୟବାଦୀ ନେତାମାନଙ୍କର ନିଜ ଅଞ୍ଚଳରେ ରହି ସମଗ୍ର ଓଡ଼ିଶାର ସେବା କରିବା ନୀତି ତାଙ୍କୁ ଆକର୍ଷିତ କରିଥିଲା । ୧୯୧୨ ମସିହା ଶେଷ ବେଳକୁ କଲିକତାରୁ ବ୍ରହ୍ମପୁର ଫେରି ସେ ଗଞ୍ଜାମରେ ବିଶେଷତଃ ବ୍ରହ୍ମପୁର ସହରରେ ତେଲଗୁମାନଙ୍କର ପ୍ରାଧାନ୍ୟ ଏବଂ ଓଡ଼ିଆମାନଙ୍କର ଦୁର୍ଦ୍ଦଶା ଦେଖି ସେମାନଙ୍କର ପୁନର୍ଜାଗରଣ ପାଇଁ କାର୍ଯ୍ୟ କରିବାକୁ ସ୍ଥିର କଲେ । ବ୍ରହ୍ମପୁରଠାରେ ସେ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପର୍କରେ ଆସିଲେ ଏବଂ ତାଙ୍କ ପରାମର୍ଶରେ ସାପ୍ତାହିକ ଆଶା କାଗଜ ପ୍ରକାଶ କରିବାକୁ ସ୍ଥିର କଲେ । ଆଶା କାଗଜ ମାଧ୍ୟମରେ ସେ ଓଡ଼ିଆମାନଙ୍କର ସମସ୍ୟା ସରକାର ଏବଂ ସର୍ବସାଧାରଣଙ୍କ ଗୋଚରକୁ ଆଣିବାକୁ ଏବଂ ସେ ସମସ୍ୟାମାନଙ୍କର ସମାଧାନ ପାଇଁ ଜୀବନର ଶେଷ ପର୍ଯ୍ୟନ୍ତ କାର୍ଯ୍ୟ କରିବାକୁ ସ୍ଥିରକଲେ ।

ସତ୍ୟବାଦୀର ପଞ୍ଚସଖା ଓଡ଼ିଆମାନଙ୍କର ସମସ୍ୟା ଏବଂ ସେଗୁଡ଼ିକର ସମାଧାନ ବିଷୟରେ ଆଶା କାଗଜରେ ଲେଖି ଶଶିବାବୁଙ୍କ ସହିତ ସହଯୋଗ କଲେ । ଓଡ଼ିଆମାନଙ୍କର ଏକତ୍ରୀକରଣ ଏବଂ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନ ଆଶା କାଗଜର ମୁଖ୍ୟ ଆଭିମୁଖ୍ୟ ହେଲା ଏବଂ ତାହା ଶଶିବାବୁଙ୍କର ସମାଜରେ ସ୍ଥିତିକୁ ଦୃଢ଼କଲା । ୧୯୧୪ ମସିହାରେ ସେ ବ୍ରହ୍ମପୁର ମ୍ୟୁନିସିପାଲିଟିର ଉପନଗରପାଳ ହୋଇ ଏବଂ ୧୯୨୦ ମସିହାରୁ ୧୯୩୦ ମସିହା ପର୍ଯ୍ୟନ୍ତ ମାନ୍ଦ୍ରାଜ ବିଧାନ ପରିଷଦର ସଭ୍ୟ ହୋଇ ଗଞ୍ଜାମବାସୀଙ୍କର ସାମୂହିକ ଉନ୍ନତି କରିପାରିଥିଲେ ।

୧୯୧୪ ମସିହା ଡିସେମ୍ବର ମାସରେ ପାରଳାଖେମୁଣ୍ଡିରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ ଅଧିବେଶନରେ ଶଶିବାବୁ ଉପସ୍ଥିତ ରହି ଏକ ପତ୍ରିକାର ସମ୍ପାଦକ ଏବଂ ଜଣେ ନେତୃସ୍ଥାନୀୟ ବ୍ୟକ୍ତି ଭାବରେ ଗୁରୁ ଦାୟିତ୍ୱ ବହନ କରିଥିଲେ । ୧୯୨୧ ମସିହାରେ ତାଙ୍କ ନେତୃତ୍ୱରେ ଗଞ୍ଜାମର କର୍ମୀମାନେ ମହାତ୍ମା ଗାନ୍ଧୀଙ୍କୁ ବୁଝାଇ ଗଞ୍ଜାମ ଜିଲ୍ଲାକୁ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଅଧୀନରେ ରଖାଇଥିଲେ । ୧୯୨୦ ମସିହାରେ ଚକ୍ରଧରପୁରଠାରେ ଉତ୍କଳ ସମ୍ମିଳନୀର ଅଧିବେଶନରେ ଗୃହୀତ ପ୍ରସ୍ତାବକୁ- ''ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ଦେଶ ମିଶ୍ରଣ ନ ହୋଇ ଦେଶର ସ୍ୱରାଜ୍ୟପ୍ରାପ୍ତି ହେବ, ଉତ୍କଳ ସମ୍ମିଳନୀ କଂଗ୍ରେସର ଏକ ଅଙ୍ଗ ହେବ

ଏବଂ କଂଗ୍ରେସମାଧ୍ୟମରେ ଦେଶମିଶ୍ରଣ ଲକ୍ଷ୍ୟ ସାଧିତ ହେବ''- ମଧୁବାବୁ, ବ୍ରଜସୁନ୍ଦର ଦାସ ଓ ଶଶିବାବୁ ଘୋର ବିରୋଧ କରିଥିଲେ ।

୧୯୨୪ ମସିହାରେ ଗଞ୍ଜାମ ଜିଲ୍ଲା ଓଡ଼ିଶା ସହିତ ମିଶିବା ଓଡ଼ିଆମାନଙ୍କର ଦାବି ଅନୁସନ୍ଧାନ କରୁଥିବା ଫିଲିପ୍ ଓ ଡ଼ଫ୍ କମିଟି ଆଗରେ ଓଡ଼ିଆମାନଙ୍କର ଦାବି ସପକ୍ଷରେ ସାକ୍ଷ୍ୟ ଦେବାପାଇଁ ଶଶିବାବୁ ସମଗ୍ର ଗଞ୍ଜାମ ଜିଲ୍ଲାରେ ବୁଲି ଓଡ଼ିଆମାନେ ଜୟପୁର, ପାରଳାଖେମୁଣ୍ଡି ଏବଂ ବ୍ରହ୍ମପୁର ପ୍ରଭୃତି ସ୍ଥାନମାନଙ୍କରେ ବହୁସଂଖ୍ୟାରେ ସାକ୍ଷୀ ଦେବାପାଇଁ ଆୟୋଜନ କରିଥିଲେ ଏବଂ ଆଶା ସାହାଯ୍ୟରେ ଜନମତ ସଂଗଠିତ କରିଥିଲେ ।

୧୯୨୭ ମସିହା ଡିସମ୍ବର ମାସରେ ମୁଖଲିଙ୍ଗମ୍‌ଠାରେ ଅନୁଷ୍ଠିତ ସମ୍ମିଳନୀରେ ତେଲଗୁମାନଙ୍କର ଋଷିକୁଲ୍ୟା ଦକ୍ଷିଣର ସମଗ୍ର ଅଞ୍ଚଳ ମାନ୍ଦ୍ରାଜରେ ରହିବା ଦାବିକୁ ନୀଳକଣ୍ଠ ଦାସଙ୍କ ସାହାଯ୍ୟରେ ଶଶିବାବୁ ବ୍ୟର୍ଥ କରିଦେଇଥିଲେ ।

୧୯୨୮ ମସିହାରେ ସାଇମନ କମିସନକୁ କଂଗ୍ରେସ ଲୋକେ ସମଗ୍ର ଭାରତବର୍ଷରେ ବିରୋଧ କରୁଥିବାବେଳେ, ଉତ୍କଳ ସମ୍ମିଳନୀର କର୍ମକର୍ତ୍ତାମାନେ ସ୍ୱାଗତ କରିଥିଲେ ଏବଂ ସ୍ୱତନ୍ତ୍ର ପ୍ରଦେଶ ଗଠନ ନିମିତ୍ତ କମିସନ୍‌କୁ ସ୍ମାରକପତ୍ର ଦେଇଥିଲେ । ଶଶିବାବୁ କମିସନଙ୍କୁ ସ୍ୱାଗତ କରି ଆଶାରେ ଲେଖିଥିଲେ ଏବଂ କମିଶନଙ୍କୁ ସ୍ମାରକପତ୍ର ଦେବା କାର୍ଯ୍ୟରେ ପୂର୍ଣ୍ଣ ସହଯୋଗ କରିଥିଲେ । ସେହି ବର୍ଷ ଡିସେମ୍ବର ମାସରେ କଲିକତାରେ ଅନୁଷ୍ଠିତ ସର୍ବଦଳୀୟ ସମ୍ମିଳନୀରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପ୍ରସ୍ତାବ ମୋତିଲାଲ୍ ନେହେରୁ ପ୍ରଭୃତି ଆଲୋଚନା କରାଇ ନ ଦେବାରୁ ଶଶିବାବୁ ଦଶ ପନ୍ଦର ହଜାର ଓଡ଼ିଆ ଲୋକଙ୍କଦ୍ୱାରା ସମ୍ମିଳନୀ ସ୍ଥାନରେ ବିକ୍ଷୋଭ କରାଇଥିଲେ; ଫଳରେ ସମ୍ମିଳନୀରେ ପ୍ରସ୍ତାବ ଗୃହୀତ ହୋଇଥିଲା ଯେ ଆର୍ଥିକ ଦୃଷ୍ଟିରୁ ସମ୍ଭବ ହେଲେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରାଯାଇପାରେ ।

୧୯୩୧ ମସିହାବେଳକୁ ଦୈନିକ ଆଶା ଓଡ଼ିଆ ଆନ୍ଦୋଳନର ମୁଖପତ୍ର ହୋଇଥିଲା ଏବଂ ଶଶିବାବୁ ଦୈନିକ ଆଶା ମାଧ୍ୟମରେ ସେ ବିଷୟରେ ଜନମତ ସୃଷ୍ଟିକରୁଥିଲେ ଏବଂ ନିଜେ ବିଭିନ୍ନ କମିଟି, କମିସନରେ ସାକ୍ଷ୍ୟପ୍ରଦାନ ଏବଂ ବିଭିନ୍ନ ସଭାସମିତି ଓ ଡେପୁଟେସନ୍‌ର ଆୟୋଜନ କରୁଥିଲେ । ଦକ୍ଷିଣାଞ୍ଚଳରେ ଆଶା ପ୍ରେସରୁ ଓଡ଼ିଆ ଆନ୍ଦୋଳନ ନିୟନ୍ତ୍ରଣ କରାଯାଉଥିଲା । ଶଶିବାବୁ 'ପ୍ରାଣ ଓ ପ୍ରକୃତି' ଶିରୋନାମାରେ ଖଣ୍ଡିଏ ପୁସ୍ତକ ରଚନା କରିଥିଲେ । ଏହା ଗୋପବନ୍ଧୁଙ୍କ ସ୍ମୃତିରେ ଉତ୍ସର୍ଗ ହୋଇଥିଲା ଏବଂ ଏହାର ବହୁଳ ପ୍ରସାର ହୋଇଥିଲା । ବିଂଶ ଶତାବ୍ଦୀର ଆରମ୍ଭରୁ ବିଭିନ୍ନ ଜନଗଣନାରେ ବଙ୍ଗଳା, ବିହାର, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜରେ ଓଡ଼ିଆମାନଙ୍କ ଦାବିକୁ ଦବାଇଦେବାପାଇଁ ଚକ୍ରାନ୍ତ କରି ଓଡ଼ିଆମାନଙ୍କର ସଂଖ୍ୟା କମାଇ ଲେଖାଇଦିଆଯାଉଥିଲା । ୧୯୩୧ ମସିହା ଜନଗଣନାରେ ଓଡ଼ିଆମାନଙ୍କ ସଂଖ୍ୟା ସଠିକ ଭାବରେ ଉପସ୍ଥାପିତ କରିବାପାଇଁ ଶଶିବାବୁ ଆଶା ମାଧ୍ୟମରେ ପ୍ରବଳ ଉଦ୍ୟମ କରିଥିଲେ । ବିଭିନ୍ନ ପ୍ରଦେଶରେ ଓଡ଼ିଆ ଆନ୍ଦୋଳନର କର୍ମୀମାନେ ଗାଁ ଗାଁ ବୁଲି ଓଡ଼ିଆ ଲୋକଙ୍କୁ ବୁଝାଇଥିଲେ ଯେ, ଜନଗଣନା ସମୟରେ ସେମାନଙ୍କର ମାତୃଭାଷା ଯେପରି ସଠିକ ଭାବେ ଓଡ଼ିଆ ବୋଲି ଲେଖାଯିବ, ସେଥିପାଇଁ ଯତ୍ନବାନ୍ ହେବେ । ୧୯୩୧

ମସିହା ଫେବୃୟାରୀ ମାସରେ ଏ ବିଷୟରେ ଦୈନିକ ଆଶାର ଏକ ବିଶେଷାଙ୍କ ପ୍ରକାଶିତ ହୋଇଥିଲା ଏବଂ ସବୁ ବିଚ୍ଛିନ୍ନାଞ୍ଚଳରେ କର୍ମୀମାନେ ହଜାର ହଜାର ସଂଖ୍ୟାରେ ତାହା ବିତରଣ କରିଥିଲେ । ଓଡ଼ିଆ ଆନ୍ଦୋଳନର ଯେଉଁ ନେତାମାନେ ମେଦିନୀପୁର ପ୍ରଭୃତି ବିଚ୍ଛିନ୍ନାଞ୍ଚଳରେ କାମକରୁଥିଲେ, ସେମାନଙ୍କର ରିପୋର୍ଟ ଅଗ୍ରାଧିକାର ଭାବରେ ଆଶାରେ ପ୍ରକାଶ ପାଉଥିଲା । କଲିକତାର ଓଡ଼ିଆ ଶ୍ରମିକମାନଙ୍କର ଅବସ୍ଥା ଏବଂ ସେମାନଙ୍କର ସଂଗଠନମାନଙ୍କର ଆବଶ୍ୟକତା ବିଷୟରେ ଶଶିବାବୁ ସଂପାଦକୀୟ ଲେଖୁଥିଲେ । ଏସବୁ ଲେଖାଦ୍ୱାରା ଶ୍ରମିକମାନଙ୍କ ମଧ୍ୟରେ ଜାଗରଣ ସୃଷ୍ଟିହୋଇଥିଲା ।

୧୯୩୧ ମସିହାରେ ଗୋଲଟେବୁଲ୍ ବୈଠକରେ ଓଡ଼ିଶା ପ୍ରଦେଶ ଗଠନ ହେବା ନିଷ୍ପତ୍ତି ହେବା ପରେ ସେ ବର୍ଷ ସେପ୍ଟେମ୍ବର ମାସରେ ଓଡ଼ିଶା ସୀମା ନିର୍ଦ୍ଧାରଣ ପାଇଁ ଓଡ଼ନେଲ୍ କମିଟି ଗଠିତ ହୋଇଥିଲା । କମିଟି ନଭେମ୍ବର ମାସରେ ପ୍ରାକୃତିକ ଓଡ଼ିଶାର ବିଭିନ୍ନ ସ୍ଥାନରେ ସାକ୍ଷ୍ୟ ଗ୍ରହଣ କରିଥିଲେ । ସାକ୍ଷ୍ୟ ପ୍ରଦାନର ସୁବ୍ୟବସ୍ଥା କରିବା ପାଇଁ ଚିକିଟି ରାଜା ଗୌରଚନ୍ଦ୍ର ଦେବଙ୍କ ଅଧ୍ୟକ୍ଷତାରେ ଓଡ଼ିଶାରେ ଗୋଟିଏ କମିଟି ଗଠିତ ହୋଇଥିଲା । ସେଥିରେ ଶଶିବାବୁ, ନିରଞ୍ଜନ ପଟ୍ଟନାୟକ, ଶ୍ରୀକୃଷ୍ଣ ମହାପାତ୍ର, ଲକ୍ଷ୍ମୀଧର ମହାନ୍ତି, ବିଶ୍ୱନାଥ ମିଶ୍ର, ଭୁବନାନନ୍ଦ ଦାସ, ଲିଙ୍ଗରାଜ ପାଣିଗ୍ରାହୀ ଓ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ପ୍ରମୁଖ ସଭ୍ୟ ଥିଲେ । ଗୋପାଳପୁରଠାରେ ଓଡ଼ନେଲ କମିଟିର ସଦସ୍ୟମାନଙ୍କୁ ରଖାଇ ସାକ୍ଷ୍ୟ ଗ୍ରହଣର ବ୍ୟବସ୍ଥା କରାହୋଇଥିଲା । ଶଶିବାବୁ ଆଶାମାଧ୍ୟମରେ କମିଟିରେ ସାକ୍ଷ୍ୟ ପ୍ରଦାନ ପାଇଁ ଜନମତ ସୃଷ୍ଟି କରିଥିଲେ । ନିଜେ ବିଶାଖାପାଟଣା ପର୍ଯ୍ୟନ୍ତ ବିଭିନ୍ନ ଅଞ୍ଚଳରେ ବୁଲି ଲୋକମାନଙ୍କୁ ସାକ୍ଷ୍ୟ ଦେବାକୁ ଉତ୍ସାହିତ କରିଥିଲେ । ବ୍ରହ୍ମପୁରଠାରୁ ଲୋକମାନଙ୍କୁ ଗୋପାଳପୁର ନେବାକୁ ଗୋଟିଏ ସ୍ୱତନ୍ତ୍ର ଅଫିସ ଖୋଲାଯାଇଥିଲା । ବ୍ରହ୍ମପୁର ଷ୍ଟେସନରେ ଓଡ଼ନେଲ କମିଟି ମେମ୍ବରମାନଙ୍କୁ ବହୁଲୋକସମାଗମରେ ସ୍ୱାଗତ କରାଯାଇଥିଲା । ଗୋପାଳପୁରଠାରେ ବିଚ ହାଉସ୍‌ରେ ସାତଦିନକାଳ ସାକ୍ଷ୍ୟ ଗ୍ରହଣ କରାଯାଇଥିଲା । ପାରଳା, ଘୁମୁସର, ବିଜୟଓ୍ୟାଡ଼ା, ରାଜମହେନ୍ଦ୍ରୀ ପ୍ରଭୃତି ଅଞ୍ଚଳରୁ ଲୋକମାନେ ସ୍ୱତନ୍ତ୍ର ବସ୍‌ରେ ଆସି ସାକ୍ଷ୍ୟ ଦେଇଥିଲେ । ଶଶିବାବୁ ନିଜ ସାକ୍ଷ୍ୟରେ ତେଲଗୁମାନଙ୍କୁ 'ଅଘୋରୀ ଓ ଦୋଘରୀ' ବୋଲି ବର୍ଣ୍ଣନା କରିଥିଲେ । ଚିକିଟିରାଜା କମିଟି ପାଇଁ ବନ୍ଧୁମିଳନର ଆୟୋଜନ କରିଥିଲେ । ଶଶିବାବୁ କମିଟି ସହିତ ଚିକିଟି ଓ ଜୟପୁର ଯାଇଥିଲେ । ମାତ୍ର ମାନ୍ଦ୍ରାଜ ସରକାରଙ୍କର ଅଣଓଡ଼ିଆମାନଙ୍କଦ୍ୱାରା ପ୍ରଭାବିତ ହୋଇ କମିଟି ଓଡ଼ିଆମାନଙ୍କ ସପକ୍ଷରେ ମତ ଦେଇ ନ ଥିଲେ । ୧୯୩୬ ମସିହା ଅପ୍ରେଲ ମସିହାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ସମୟରେ ସେ 'ଆଶା'ର ଗୋଟିଏ ବିଶେଷାଙ୍କ ପ୍ରକାଶ କରିଥିଲେ, ଏବଂ କଟକରେ ପାରଳା ମହାରାଜାଙ୍କ ଦ୍ୱାରା ଆୟୋଜିତ ବନ୍ଧୁମିଳନ ଭୋଜିସଭାରେ ଯୋଗଦେଇଥିଲେ । ସ୍ୱତନ୍ତ୍ର ପ୍ରଦେଶ ଗଠନ ପରେ ଶଶିବାବୁ ମାନ୍ଦ୍ରାଜ, ବଙ୍ଗଳା ଓ ମଧ୍ୟପ୍ରଦେଶରେ ରହିଯାଇଥିବା ବିଚ୍ଛିନ୍ନାଞ୍ଚଳରେ ବୁଲି ଓଡ଼ିଆ ଆନ୍ଦୋଳନ ଚାଲୁରଖିବାକୁ ଆହ୍ୱାନ ଦେଇଥିଲେ । ୧୯୩୮ ମସିହା ଅପ୍ରେଲ ମାସରେ ମଞ୍ଜୁଷାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ ଅଧିବେଶନର ଶଶିବାବୁ

ଅଭ୍ୟର୍ଥନା ସମିତିର ସଭାପତି ଥିଲେ ଏବଂ ଅଧିବେଶନରେ ମଞ୍ଜୁଷା ନାମକୁ ପୁନର୍ବାର ମଣ୍ଡାସା କରିବାକୁ ଆହ୍ୱାନ କରିଥିଲେ । ସ୍ଥୂଳତଃ ୧୯୦୮ ମସିହାରେ ମଧୁବାବୁଙ୍କ ସହ କାମ କରିବା ଏବଂ ୧୯୦୯ ମସିହାରୁ ୧୯୧୨ ମସିହା ପର୍ଯ୍ୟନ୍ତ କଲିକତାରେ ଗୋପବନ୍ଧୁ ଏବଂ ସତ୍ୟବାଦୀର ଅନ୍ୟ ସଖାମାନଙ୍କ ସହିତ ଓଡ଼ିଆମାନଙ୍କର ସ୍ୱାର୍ଥ ଓ ସ୍ୱାଭିମାନ ରକ୍ଷାକରିବା ପାଇଁ କାମ କରିବା ସମୟଠାରୁ ଶଶିବାବୁ ଓଡ଼ିଆମାନଙ୍କର ହିତପାଇଁ କାର୍ଯ୍ୟ କରିବାକୁ ପ୍ରେରଣା ପାଇଥିଲେ ଏବଂ ସେହି ପ୍ରେରଣାବଳରେ ସେ ତାଙ୍କର ଜୀବନର ଶେଷ ପର୍ଯ୍ୟନ୍ତ ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷା ଏବଂ ହିତସାଧନ ପାଇଁ କାର୍ଯ୍ୟ କରିଥିଲେ ।

**ବ୍ୟବସ୍ଥାପକ ଶଶିବାବୁ –**

୧୯୧୩ମସିହାରେ ସାପ୍ତାହିକ ଆଶା ପ୍ରକାଶ ପାଇବା ପରେ ତାହା ଅଳ୍ପ ଦିନ ମଧ୍ୟରେ ପ୍ରାକୃତିକ ଓଡ଼ିଶାରେ ଜନପ୍ରିୟ ହୋଇଥିଲା । ଗୌରୀଶଙ୍କର 'ଉତ୍କଳ ଦୀପିକା' ପ୍ରେସ ଛାଡ଼ିବା ପରେ ଦୀପିକାର ପ୍ରସାର ଏବଂ ଲୋକପ୍ରିୟତାର ଅବକ୍ଷୟ ଘଟିଥିଲା ଏବଂ ସମାଜ ପତ୍ରିକା ସେତେବେଳଯାଏଁ ପ୍ରକାଶିତ ହୋଇନଥିଲା । ସତ୍ୟବାଦୀର ପଣ୍ଡିତଗଣ 'ଆଶା'ରେ ଲେଖୁଥିଲେ ଏବଂ ମାସିକ ସତ୍ୟବାଦୀ ସାହିତ୍ୟ ପତ୍ରିକା ଆଶା ପ୍ରେସ୍‌ରୁ ପ୍ରକାଶ ପାଉଥିଲା । ସେତେବେଳେ ଆଶା ପ୍ରେସ୍ ଗଞ୍ଜାମ ଜିଲ୍ଲାର ରାଜନୈତିକ ଏବଂ ସାଂସ୍କୃତିକ କେନ୍ଦ୍ର ଥିଲା । ଏହି କେନ୍ଦ୍ରର ନେତା ଶଶିବାବୁ ଓଡ଼ିଶାର ଜଣେ ପ୍ରସିଦ୍ଧ ବ୍ୟକ୍ତି ହୋଇପାରିଥିଲେ । ବ୍ରହ୍ମପୁରର ଓଡ଼ିଆମାନଙ୍କ ମଧ୍ୟରେ ହୀନମ୍ମନ୍ୟତା ଅନେକ ପରିମାଣରେ ଦୂରହୋଇଥିଲା ।

ସେତେବେଳେ ବ୍ରହ୍ମପୁର ମ୍ୟୁନିସିପାଲିଟିର ସବୁ ସଭ୍ୟ ସରକାରଙ୍କଦ୍ୱାରା ମନୋନୀତ ହୋଇଥିଲେ । ମାନ୍ଦ୍ରାଜ ସରକାରରେ ତେଲଗୁମାନଙ୍କର ପ୍ରଭାବ ଥିବାରୁ କୌଣସି ଓଡ଼ିଆ ଲୋକ ବ୍ରହ୍ମପୁର ମ୍ୟୁନିସିପାଲିଟିକୁ ମନୋନୀତ ହୋଇପାରୁ ନ ଥିଲେ । ୧୯୧୪ ମସିହାରେ ବିଶିଷ୍ଟ ଓଡ଼ିଆ ଓକିଲ ପର୍ଶୁରାମ ପାତ୍ର ବ୍ରହ୍ମପୁର ମ୍ୟୁନିସିପାଲିଟିର ଚେୟାରମାନ ମନୋନୀତ ହେଲେ ଏବଂ ଆଶାର ସମ୍ପାଦକ ଶଶିଭୂଷଣ ରଥ ଭାଇସ୍ ଚେୟାରମ୍ୟାନ୍ ବା ଉପସଭାପତି ହେଲେ । ଏଥିରେ ଖୁସିହୋଇ ମଞ୍ଜୁଷାର ରାଜା ଶ୍ରୀନିବାସ ରାଜମଣି ଶଶିବାବୁଙ୍କୁ ଗୋଟିଏ ଘୋଡ଼ାଗାଡ଼ି ଉପହାର ଦେଇଥିଲେ । ସେହି ଘୋଡ଼ାଗାଡ଼ିରେ ଶଶିବାବୁ ସହର ପରିକ୍ରମା କରି ଲୋକମାନଙ୍କର ଅଭାବ-ଅଭିଯୋଗ ଶୁଣୁଥିଲେ ଏବଂ ସେସବୁ ଦୂରକରିବାକୁ ଚେଷ୍ଟାକରୁଥିଲେ । ନଗରପାଳ ପର୍ଶୁରାମ ପାତ୍ର ଯେଉଁ କାର୍ଯ୍ୟ ହାସଲ କରିବାକୁ କଷ୍ଟସାଧ୍ୟ ମନେକରୁଥିଲେ, ସେସବୁ କାମ ଶଶିବାବୁଙ୍କଦ୍ୱାରା କରାଉଥିଲେ । ବଡ଼ବଜାର ଛକରୁ ବର୍ତ୍ତମାନର ଗଜପତି ଛକଯାଏ ରାସ୍ତା ସିଧାକରିବା ଏହି କଷ୍ଟକର କାର୍ଯ୍ୟମାନଙ୍କ ମଧ୍ୟରୁ ଗୋଟିଏ ଥିଲା । ଏହି ସମୟରେ ବ୍ରହ୍ମପୁର ସହରକୁ ପାଇପ୍ ପାଣି ଯୋଗାଣ ଆରମ୍ଭ ହୋଇଥିଲା ଏବଂ ମଇଳା ପାଣି ନିଷ୍କାସନ ପାଇଁ ପକ୍କାନାଳୀ ତିଆରି ହୋଇଥିଲା । ଶଶିବାବୁ ବ୍ରହ୍ମପୁର ମ୍ୟୁନିସିପାଲିଟିର ଛଅବର୍ଷ ଉପନଗରପାଳ ହୋଇଥିଲେ ।

ସେହି ସମୟ ମଧ୍ୟରେ ତାଙ୍କ ଉଦ୍ୟମରେ ୧୯୧୮ ମସିହାରେ ବ୍ରହ୍ମପୁର-ଆସିକା ରୋଡ଼ଠାରେ ଗୋଟିଏ ଓଡ଼ିଆ ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଥିଲା । ସେତେବେଳେ

ଖଲ୍ଲିକୋଟ କଲେଜରେ ଓଡ଼ିଆମାନେ ନିଯୁକ୍ତି ପାଇପାରୁନଥିଲେ । ଏହି ନୂତନ ବିଦ୍ୟାଳୟରେ ଉଚ୍ଚଶିକ୍ଷିତ ଓଡ଼ିଆମାନେ ଶିକ୍ଷକରୂପେ ନିଯୁକ୍ତ ହେଉଥିଲେ । ପରେ ମାନ୍ଦ୍ରାଜ ସରକାରଙ୍କ ଆଦେଶବଳରେ ଉକ୍ତ ବିଦ୍ୟାଳୟକୁ ବ୍ରହ୍ମପୁର ମ୍ୟୁନିସିପାଲିଟି ନିଜ ପରିଚାଳନା ଅଧୀନକୁ ନେଇଥିଲା ଏବଂ ଏହା ଗୋଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ ହୋଇଥିଲା । କ୍ରମେ ଛାତ୍ରୀସଂଖ୍ୟା ବଢ଼ିବାଯୋଗୁଁ ସେହି ପରିସରରେ ଏକ ସ୍ୱତନ୍ତ୍ର ବାଳିକା ଉଚ୍ଚବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା ।

୧୯୨୦ ମସିହାରେ 'ମଣ୍ଟେଗୁ-ଚେମସ୍‌ଫୋର୍ଡ଼ ଶାସନ ସଂସ୍କାର' ଅନୁସାରେ ମାନ୍ଦ୍ରାଜ ବିଧାନ ପରିଷଦ ପାଇଁ ବ୍ରହ୍ମପୁରଠାରେ ପ୍ରଥମ ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ସେତେବେଳେ ଶହେ ଟଙ୍କାରୁ ଅଧିକ ରାଜସ୍ୱ ଦେଉଥିବା ଲୋକମାନଙ୍କର ଭୋଟ ଦେବାର ଅଧିକାର ଥିଲା । ଗଞ୍ଜାମରୁ ସାର୍ ପର୍ଶୁରାମ ପାତ୍ର, ବିଶ୍ୱନାଥ ଦାସ ଏବଂ ଶଶିଭୂଷଣ ରଥ ବିଧାନ ପରିଷଦର ସଭ୍ୟରୂପେ ନିର୍ବାଚିତ ହୋଇଥିଲେ । ନିଜର କାର୍ଯ୍ୟଦକ୍ଷତା ହେତୁ ଏହି ତିନିଜଣଯାକ ମାନ୍ଦ୍ରାଜ ବିଧାନ ପରିଷଦରେ ବହୁ ସୁନାମ ଅର୍ଜନ କରିଥିଲେ । ଶଶିବାବୁ ଗଞ୍ଜାମ ଜିଲ୍ଲାର ସର୍ବାଙ୍ଗୀଣ ଉନ୍ନତି ନିମିତ୍ତ ବିଭିନ୍ନ ଯୋଜନା ସରକାରଙ୍କ ନିକଟରେ ଉପସ୍ଥାପିତ କରିଥିଲେ । କୃଷି ଉନ୍ନୟନ ପାଇଁ ଜଳସେଚନ, ରାସ୍ତାଘାଟ ଏବଂ ସେତୁ ନିର୍ମାଣ କ୍ଷେତ୍ରରେ ଉଲ୍ଲେଖନୀୟ ଅଗ୍ରଗତି ଘଟିଥିଲା । ବ୍ରହ୍ମପୁର ମ୍ୟୁନିସିପାଲିଟିର ଉପନଗରପାଳ ଥିବାବେଳେ ଶଶିବାବୁ ଯେଉଁ ବିଭିନ୍ନ ସମସ୍ୟା ଜାଣିଥିଲେ, ସେଥିପ୍ରତି ସରକାରଙ୍କର ଦୃଷ୍ଟି ଆକର୍ଷଣକରି ସେଗୁଡ଼ିକ ସମାଧାନ କରିବାରେ ସଫଳ ହୋଇଥିଲେ ।

ବର୍ଷରେ ତିନିଥର ବିଧାନ ପରିଷଦର ବୈଠକ ଅନୁଷ୍ଠିତ ହେଉଥିଲା । ଶଶିବାବୁ ନିୟମିତ ଭାବରେ ବୈଠକମାନଙ୍କରେ ଯୋଗଦେଉଥିଲେ ଏବଂ ଆଲୋଚନାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରୁଥିଲେ । ସେତେବେଳେ ପରିଷଦର ସଭ୍ୟମାନଙ୍କର ଦରମା ନ ଥିଲା । ସଭ୍ୟମାନେ କେବଳ ଯିବା-ଆସିବା ଗସ୍ତଖର୍ଚ୍ଚ ପାଉଥିଲେ । ସେ ଥରକେ ୩୪୮ ଟଙ୍କା ପାଉଥିଲେ । ବିଧାନ ପରିଷଦର ଅଧିବେଶନ ଚାଲୁଥିବା ସମୟରେ ୧୯୨୧ ମସିହା ଜାନୁଆରୀ ୯ ତାରିଖରେ ଖଲ୍ଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ସାବାଳକ ହୋଇ ରାଜ୍ୟଭାର ଗ୍ରହଣ କରିଥିଲେ । ଠିକ୍ ସେହି ସମୟରେ ମଧୁବାବୁ ବିହାର-ଓଡ଼ିଶାର ସ୍ୱାୟତ୍ତଶାସନ ବିଭାଗର ମନ୍ତ୍ରୀ ହୋଇଥିଲେ । ଶଶିବାବୁ ଆନନ୍ଦିତ ହୋଇ ତାଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ସେ ମଧୁବାବୁଙ୍କୁ ତାଙ୍କର ଗୁରୁରୂପେ ଗ୍ରହଣ କରିଥିଲେ । ତାଙ୍କ ମତରେ ମଧୁବାବୁ ଓଡ଼ିଶାରେ ସବୁଠାରୁ ଦକ୍ଷ ଲୋକ ଏବଂ ଓଡ଼ିଆ ଜାତିର ଗର୍ବ ଥିଲେ । ଶଶିବାବୁ ମଧୁବାବୁଙ୍କର ଜ୍ଞାନ ଓ ଦେଶପ୍ରେମର ସ୍ତାବକ ଥିଲେ ।

୧୯୨୦ ମସିହାରେ ଶଶିବାବୁଙ୍କର ଦତ୍ତ-ପିତା ଦିଗମ୍ବର ରଥଙ୍କର ଦେହାନ୍ତ ହୋଇଥିଲା । ସେ ନିଷ୍ଠାପର ଭାବରେ ତାଙ୍କର ଶୁଦ୍ଧିକ୍ରିୟା କରିଥିଲେ । ମହୁଲିଆ ସହିତ ତାଙ୍କର ବିଶେଷ ଗତାଗତ ନ ଥିଲା, ସୋରଡ଼ାରେ ନିଜ ଭାଇମାନଙ୍କ ସହିତ ଭଲ ସମ୍ପର୍କ ଥିଲା । ସେମାନେ ଗଞ୍ଜାମ ଜିଲ୍ଲାରେ ବିଭିନ୍ନ ସଂସ୍ଥାରେ କାର୍ଯ୍ୟ କରୁଥିଲେ ।

ଖଲ୍ଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜଙ୍କ ସହିତ ପରିଚୟ ହେବାଦିନଠାରୁ ତାଙ୍କ ସହିତ ଶଶିବାବୁଙ୍କର ବିଶେଷ ସହୃଦୟତା ଜନ୍ମିଥିଲା । ୧୯୨୨ ମସିହାରେ ମର୍ଦ୍ଦରାଜ ଗଞ୍ଜାମ ଜିଲ୍ଲାବୋର୍ଡ଼ର ସଭାପତି ନିର୍ବାଚିତ ହୋଇଥିଲେ । ଶଶିବାବୁ ଓ ମର୍ଦ୍ଦରାଜ ଉଭୟ ମିଶି ସେ ସମୟରେ ଗଞ୍ଜାମ ଜିଲ୍ଲାରେ ବହୁ ରାସ୍ତାଘାଟ ଏବଂ ସେତୁ ନିର୍ମାଣ କରାଇଥିଲେ । ସେହି ସମୟରେ ଗଞ୍ଜାମ ଜିଲ୍ଲାରେ ଋଷିକୁଲ୍ୟା, ଆସିକାରେ ବଡ଼ନଦୀ, ହିଞ୍ଜିଳିକାଟୁ ଓ ମଳାଭଞ୍ଜଠାରେ ଘୋଡ଼ାହାଡ଼, ପାରଳାଖେମୁଣ୍ଡି ଓ ବାରୁଅଠାରେ ମହେନ୍ଦ୍ରତନୟା, ଶ୍ରୀକାକୋଲମ୍‌ଠାରେ ବଂଶଧାରା, ଇଚ୍ଛାପୁରଠାରେ ବାହୁଡ଼ା ନଦୀରେ ପୋଲମାନ ନିର୍ମିତ ହୋଇଥିଲା ଏବଂ ସେଗୁଡ଼ିକର ଆନୁଷଙ୍ଗିକ ରାସ୍ତାଘାଟ ସବୁ ନିର୍ମିତ ହୋଇଥିଲା ।

୧୮୯୬ ମସିହା ଟ୍ରଷ୍ଟ ଉପବିଧି ଅନୁସାରେ ୧୯୨୧ ମସିହାରେ ରାମଚନ୍ଦ୍ର ମର୍ଦ୍ଦରାଜ ଖଲିକୋଟ କଲେଜ ପରିଚାଳନା ଟ୍ରଷ୍ଟର ସଭାପତି ହୋଇଥିଲେ । ପୁନର୍ଗଠିତ ପରିଚାଳନା କମିଟିରେ ସେ ଶଶିଭୂଷଣ ରଥଙ୍କୁ ସଭ୍ୟରୂପେ ମନୋନୀତ କରିଥିଲେ । ୧୯୦୯ ମସିହାରେ ହରିହର ମର୍ଦ୍ଦରାଜଙ୍କ ବିୟୋଗ ପରେ କଲେଜର ବହୁତ ଋଣ ହୋଇଯାଇଥିଲା । ରାମଚନ୍ଦ୍ର ମର୍ଦ୍ଦରାଜ କଲେଜକୁ ବାର୍ଷିକ ଟ ୧୫୦୦ଙ୍କା ଅନୁଦାନ ଦେଇଥିଲେ । ଶଶିବାବୁ ବଡ଼ଖେମୁଣ୍ଡି ଓ ଧରାକୋଟ ପ୍ରଭୃତି ରାଜାମାନଙ୍କଠାରୁ ଅନୁଦାନ ଯୋଗାଡ଼ କରିଥିଲେ । କଲେଜ କମନରୁମ୍, ଲାବୋରେଟେରି ପ୍ରଭୃତି ପାଇଁ ସେହି ଟଙ୍କା ବିନିଯୋଗ କରାଯାଇଥିଲା । ଶଶିବାବୁ ଦୀର୍ଘଦିନଧରି କମିଟିର ସଭ୍ୟ ଥିଲେ । ସେ ସମୟରେ ଅନ୍ୟ କେହି ଓଡ଼ିଆ ସେ କମିଟିରେ ସଭ୍ୟ ନଥିଲେ । ଶଶିବାବୁଙ୍କ ଚେଷ୍ଟାରେ ଓକିଲ ରାମକୃଷ୍ଣ ରଥ କମିଟିର ଉପସଭାପତି ହୋଇଥିଲେ ଏବଂ ପ୍ରେମାନନ୍ଦ ମହାନ୍ତି ପାଟନା ବିଶ୍ୱବିଦ୍ୟାଳୟରୁ ଆସି କଲେଜର ପ୍ରିନ୍‌ସିପାଲ ହୋଇଥିଲେ । କ୍ରମେ ସେ କଲେଜରେ ଓଡ଼ିଆମାନଙ୍କର ପ୍ରାଧାନ୍ୟ ବଢ଼ିଥିଲା ।

୧୯୨୫ ମସିହାରେ ଶଶିବାବୁ ଦ୍ୱିତୀୟ ଥର ପାଇଁ ତେଲଗୁମାନଙ୍କର ଦୃଢ଼ ପ୍ରତିରୋଧ ସତ୍ତ୍ୱେ ମାନ୍ଦ୍ରାଜ ବିଧାନ ପରିଷଦର ସଭ୍ୟ ନିର୍ବାଚିତ ହୋଇଥିଲେ । ସେତେବେଳେ ଖଲ୍ଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ମଧ୍ୟ ବିଧାନପରିଷଦକୁ ନିର୍ବାଚିତ ହୋଇଥିଲେ । ଉଭୟ ଗଞ୍ଜାମ ଜିଲ୍ଲାର ସର୍ବାଙ୍ଗୀଣ ଉନ୍ନତି ପାଇଁ ଉଦ୍ୟମ କରିଥିଲେ । ୧୯୩୦ ମସିହାରେ ଶଶିବାବୁ ମାନ୍ଦ୍ରାଜ ବିଧାନ ପରିଷଦକୁ ନିର୍ବାଚନ ପାଇଁ ମନୋନୟନପତ୍ର ଦାଖଲ କରିଥିଲେ; ମାତ୍ର ସ୍ୱାସ୍ଥ୍ୟଗତ ଅସୁବିଧାହେତୁ ତାହା ପ୍ରତ୍ୟାହାର କରିଥିଲେ । ସେ ଥର ପାରଳା ମହାରାଜା ନିର୍ବାଚନ ଲଢୁଥିଲେ । ଶଶିବାବୁ ତାଙ୍କ ପାଇଁ ପ୍ରଚାରକରୁଥିଲେ । ପାରଳା ମହାରାଜା, ପର୍ଶୁରାମ ପାତ୍ର ଏବଂ ମାନଧାତା ଗୋରାଚାନ୍ଦ ପଟ୍ଟନାୟକ ମାନ୍ଦ୍ରାଜ ବିଧାନ ପରିଷଦକୁ ଗଞ୍ଜାମରୁ ନିର୍ବାଚିତ ହୋଇଥିଲେ ।

### ସମାଜସଂସ୍କାର ଉଦ୍ୟମ –

ଶଶିଭୂଷଣ ରଥ ଗୋଟିଏ ନୈଷ୍ଠିକ ବ୍ରାହ୍ମଣ ପରିବାରରେ ଜନ୍ମ ହୋଇଥିଲେ ଏବଂ ଜଣେ ନୈଷ୍ଠିକ ବ୍ରାହ୍ମଣ ଭାବରେ ଜୀବନଯାପନ କରୁଥିଲେ । ମାତ୍ର ପିଲାଦିନୁ ସେ ଅନ୍ଧବିଶ୍ୱାସ ଓ କୁସଂସ୍କାରର ବିରୋଧ କରୁଥିଲେ । ତାଙ୍କ ପିଲାଦିନେ ସୋରଡ଼ାରେ ଅନ୍ଧୁଣୀ ଦେବୀ

ମନ୍ଦିରପକ୍ଷରୁ ପ୍ରତିବର୍ଷ ଚୈତ୍ର ମାସରେ କଣ୍ଟାପିଢ଼ା ଉତ୍ସବ ପାଳିତ ହେଉଥିଲା । ଉତ୍ସବ ବେଳେ ଜଣେ ଲୋକ ଉପରେ ଅନ୍ଧୁଣୀ ଦେବୀ ସବାର ହୁଅନ୍ତି ବୋଲି ଲୋକମାନେ ବିଶ୍ୱାସ କରୁଥିଲେ । ଯାହା ଉପରେ ଦେବୀ ସବାର ହୁଅନ୍ତି, ସେ ପୂର୍ବରୁ ସଜ୍ଜିତ ଗୋଟିଏ କଣ୍ଟାର ବେଦି ଉପରେ ବସିଯାଇ ପଶୁପକ୍ଷୀଙ୍କ ରକ୍ତ ପିଇବା ପାଇଁ ମାଗେ । ଭକ୍ତମାନେ ଏତିକିବେଳେ ପଶୁବଳି ଦେଇ ଦେବୀ ସବାର ହୋଇଥିବା ଲୋକକୁ ଦିଅନ୍ତି ଏବଂ ସେ ତାହା ପିଏ । କେତେ ବର୍ଷ ଏହା ଦେଖିଲା ପରେ ଥରେ ବାଳକ ଶଶିଭୂଷଣ ନିଜ ଦେହରେ ଦେବୀ ସବାର ହୋଇଥିବା ଅଭିନୟ କରିଥିଲେ ଏବଂ କଣ୍ଟାପିଢ଼ା ଉପରେ ବସିଯାଇ ରକ୍ତ ପିଇବାକୁ ମାଗିଲେ । ଦର୍ଶକମାନେ ତାଙ୍କ କଥା ବିଶ୍ୱାସକଲେ । ଭକ୍ତମାନେ ପଶୁବଳି ଦେବାକୁ ପ୍ରସ୍ତୁତ ହେଉଥିବାବେଳେ ଶଶିବାବୁ ଚିତ୍କାର କଲେ ଯେ, ସେ ପଶୁରକ୍ତ ପିଇବେ ନାହିଁ; ମନୁଷ୍ୟ ରକ୍ତ ପିଇବେ । ମନୁଷ୍ୟ-ରକ୍ତ ନଦେଇ ପଶୁରକ୍ତ ଯେ ଦେବାକୁ ଉଦ୍ୟମ କରିବ, ସେ ତାକୁ ଖାଇବେ । ଲୋକମାନେ ଏହା ଶୁଣି ସ୍ତମ୍ଭୀଭୂତ ହୋଇଗଲେ । କୌଣସି ବଳି ଦିଆଯାଇପାରିଲା ନାହିଁ । କୁସଂସ୍କାର ଓ ଅନ୍ଧବିଶ୍ୱାସ ଦୂର କରିବାକୁ ପିଲାଦିନେ ଶଶିବାବୁ ଏପରି ଅଭିନୟ କରିଥିଲେ । ଏ ଘଟଣା ମଧ୍ୟ ଶଶିବାବୁଙ୍କର ହାସ୍ୟରସାତ୍ମକ ମନୋଭାବର ସୂଚନା ଦିଏ ।

୧୯୩୧ ମସିହା ଚୈତ୍ର ମାସରେ ଶଶିବାବୁ ଜେଲ୍‌ରୁ ଖଲାସ ହେବା ପରେ ତାରାତାରିଣୀ ପୀଠରେ ଛାଗବଳି ବନ୍ଦକରିବାକୁ ଉଦ୍ୟମ କରିଥିଲେ । ପ୍ରତିବର୍ଷ ଚୈତ୍ର ମାସର ଚାରିଗୋଟି ମଙ୍ଗଳବାରରେ ପ୍ରାୟ ପାଞ୍ଚ ହଜାର ଛେଳି ତାରାତାରିଣୀ ପାହାଡ଼ଉପରେ ବଳି ପଡୁଥିଲେ । ଏହି ମଙ୍ଗଳବାରମାନଙ୍କରେ ଗଞ୍ଜାମ ଜିଲ୍ଲାରୁ ଏବଂ ଓଡ଼ିଶାର ଅନ୍ୟ ଅଞ୍ଚଳମାନଙ୍କରୁ ହଜାର ହଜାର ଲୋକ ତାରାତାରିଣୀ ପୀଠରେ ରୁଣ୍ଡ ହୁଅନ୍ତି । ମାନସିକ କରିଥିବା ଲୋକମାନେ ଛାଗବଳି ଦିଅନ୍ତି । ଶହ ଶହ ବର୍ଷଧରି ଏ ପ୍ରଥା ଚାଲିଥିଲା । ବର୍ଷର ଅନ୍ୟ ମଙ୍ଗଳବାର ଓ ସଂକ୍ରାନ୍ତି ଦିନମାନଙ୍କରେ ମଧ୍ୟ ସେଠାରେ ଛାଗ ବଳିପଡୁଥିଲେ । ଏହି କାରଣରୁ ସେ ସ୍ଥାନ ଅସ୍ୱାସ୍ଥ୍ୟକର ହୋଇଯାଏ । ଏସବୁ ବନ୍ଦ ହେବା ଉଚିତ ବୋଲି ଶଶିବାବୁ ଘୋଷଣାକଲେ ।

ସେହି ପାହାଡ଼ ପାଖ ରାୟପୁର ଗ୍ରାମରେ ବାସକରୁଥିବା ସିପିଟି ଜାତିର ଲୋକ ଦେବୀଙ୍କର ପୂଜକ ଥିଲେ । ସେମାନେ ପ୍ରତି ବଳି ପାଇଁ ଦୁଇଟଙ୍କା ପାଉଣା ନେଉଥିଲେ ଏବଂ ବର୍ଷକୁ ଦଶ ହଜାରରୁ ଅଧିକ ଟଙ୍କା ଆୟ କରୁଥିଲେ । ସେମାନଙ୍କର ଆୟ ବନ୍ଦ ହୋଇଯିବ ବୋଲି ସେମାନେ ଆଶଙ୍କା କଲେ । ଶଶିବାବୁ ଚୈତ୍ର ମାସର ପ୍ରଥମ ମଙ୍ଗଳବାରଠାରୁ ଅଭିଯାନ ଆରମ୍ଭକଲେ । ଆଶା ପ୍ରେସ୍‌ରୁ ଚାଲିଚାଲିଯାଇ ଖୋଡ଼ସିଙ୍ଘ ଗ୍ରାମରେ ପହଞ୍ଚି ଜନମତ ସୃଷ୍ଟି କଲେ । ବାଟରେ ସବୁ ଗ୍ରାମରୁ ଅନେକ ଲୋକ ତାଙ୍କ ସହିତ ଶୋଭାଯାତ୍ରାରେ ଯୋଗଦେଇଥିଲେ । ପୂଜକମାନେ ସଂଘବଦ୍ଧ ଭାବରେ କଲେକ୍ଟରଙ୍କୁ ଦରଖାସ୍ତ ଦେଲେ ଯେ, ଶହ ଶହ ବର୍ଷଧରି ତାରାତାରିଣୀ ପୀଠରେ ଏହି ଛାଗବଳି ପ୍ରଥା ଚାଲିଆସିଛି । ଶଶିବାବୁ ସଂକୀର୍ତ୍ତନ କରି ଗାଁକୁ ଗାଁ ବୁଲି ହଜାର ହଜାର ସଂଖ୍ୟାରେ

ଲୋକମାନଙ୍କୁ ପଟୁଆରରେ ଆଣି ଛାଗବଳି ବନ୍ଦ କରିବାକୁ ଆସୁଛନ୍ତି । ଏହାଦ୍ୱାରା ଲୋକମାନଙ୍କର ଧର୍ମଭାବରେ ବ୍ୟାଘାତ ଘଟୁଛି ଏବଂ ଦେବୀପୀଠରେ ଗଣ୍ଡଗୋଳ ହେବାର ଆଶଙ୍କା ଅଛି । ତେଣୁ କର୍ତ୍ତୃପକ୍ଷ ଏଥିପାଇଁ କାର୍ଯ୍ୟାନୁଷ୍ଠାନ କରନ୍ତୁ ।

କଲେକ୍ଟର ଦରଖାସ୍ତ ବିଚାରକରି ଜଣେ ଡେ଼ପୁଟି କଲେକ୍ଟରଙ୍କୁ ଶଶିବାବୁଙ୍କ ଉପରେ ୧୪୪ ଧାରା ଜାରିକରିବାକୁ ଦେବୀପୀଠକୁ ପଠାଇଲେ । ଡେପୁଟି କଲେକ୍ଟର ପହଞ୍ଚିବା ପୂର୍ବରୁ ଶଶିବାବୁ ପାହାଡ଼ ଉପରକୁ ଉଠିଯାଇସାରିଥିଲେ । ଡେପୁଟି କଲେକ୍ଟର ମୁସଲମାନ ଥିବାରୁ ଦେବୀପୀଠକୁ ଯାଇପାରିଲେ ନାହିଁ; ଫଳରେ ଶଶିବାବୁଙ୍କ ଉପରେ ୧୪୪ ଧାରା ଜାରି ହୋଇପାରିଲା ନାହିଁ । ଶଶିବାବୁ ବହୁ ଲୋକ ସମାଗମରେ ଭାଷଣ ଦେଲେ ଯେ, ବଳି ବନ୍ଦକରିବାକୁ ତାଙ୍କୁ ସ୍ୱପ୍ନ ହୋଇଛି । ମାଆଙ୍କର ବଳିଗ୍ରହଣ ପାଇଁ ଆଉ ଇଚ୍ଛା ନାହିଁ । ଯେ ଏଠାରେ ଆଜି ବଳି ଦେବ ସେ ମାଆଙ୍କ ଇଚ୍ଛାର ଦ୍ରୋହୀ ହେବ । ଏହା ଧର୍ମବିରୁଦ୍ଧ କାର୍ଯ୍ୟ ବୋଲି ଲୋକମାନେ ଜାଣିଲେଣି । ମାଆଙ୍କର ଇଚ୍ଛା ଥିଲେ ମୋ ଉପରେ ୧୪୪ ଧାରା ଜାରି ହୋଇପାରିଥାନ୍ତା । ମାଆ ଚାହାନ୍ତି ଯେ, ଆଜିଠାରୁ ଏଠାରେ ବଳିପ୍ରଥା ବନ୍ଦ ହେଉ । ସେତେବେଳେ ପାହାଡ଼ ଉପରେ ଦେବୀପୀଠରେ ହଜାର ହଜାର ସଂଖ୍ୟାରେ ଲୋକ ଉପସ୍ଥିତ ଥିଲେ ।

ମଧ୍ୟରାତ୍ରିରେ ବଳି ଆରମ୍ଭ ହେବାର ଥିଲା । ପ୍ରଥମେ ମନ୍ଦିର ପରିଚାଳନା ପକ୍ଷରୁ ପାଞ୍ଚଗୋଟି ବୋଦା ହଣାଯିବା ପରେ, ସର୍ବସାଧାରଣଙ୍କର ଶହ ଶହ ଛାଗ ବଳିର ବ୍ୟବସ୍ଥା ଥିଲା । ପ୍ରଥମେ ପାଟବୋଦା ଅଣାଗଲା । ଶଶିବାବୁ ପାଟବୋଦାର ବେକ ଉପରେ ନିଜ ବେକ ରଖି ଘୋଷଣାକଲେ, ମୋ ବେକରେ ଖଣ୍ଡା ପଡ଼ିଲା ପରେ ପାଟବୋଦା ବଳି ପଡ଼ିବ । ତାରାତାରିଣୀ ଦେବୀଙ୍କୁ ଆଜି ଛାଗବଳି ପରିବର୍ତ୍ତେ ନରବଳି ମିଳିଛି । ମାଆ ଯଦି ବଳିପ୍ରିୟ, ତେବେ ସେ ଛାଗବଳି ଅପେକ୍ଷା ନରବଳି ପାଇଁ ଅଧିକ ଆଗ୍ରହ ଦେଖାଇବେ । ମାଆଙ୍କର ଯଦି ବଳିରେ ଇଚ୍ଛା ନାହିଁ, ତେବେ ଛାଗବଳି ମଧ୍ୟ ଆଜିଠାରୁ ବନ୍ଦହୋଇଯିବ । ତେଣୁ ମୁଁ ସର୍ବସାଧାରଣଙ୍କୁ ନିବେଦନ କରୁଛି ଯେ, ଏ ପାଟବୋଦା ଫେରିଯାଉ ଏବଂ ବଳି ବନ୍ଦ ହେଉ ।'' ହଜାର ହଜାର ଲୋକ ହରିବୋଲ ଧ୍ୱନି ଦେଲେ ଏବଂ ପାଟବୋଦା ଫେରିଗଲା । ସେବକମାନଙ୍କ ବିରୋଧ ବିଫଳ ହେବା ପରେ ସେମାନେ ନିରବ ରହିଲେ । ଭକ୍ତମାନଙ୍କ ଛାଗଳ ଫେରିଗଲେ । ଶଶିବାବୁ କହିଲେ, ''ଆଜିଠାରୁ ତାରାତାରିଣୀ ପୀଠରେ ଛାଗବଳି ବନ୍ଦ ହେଲା ।''ସମସ୍ତେ ଦେବୀଙ୍କୁ ମୁଣ୍ଡିଆମାରି ତଳକୁ ଫେରିଆସିଲେ । ତାର ପରଦିନ ହଜାର ହଜାର ସଂଖ୍ୟାରେ ଛେଳି ତଳକୁ ଫେରିଲେ । ଅନେକ ଲୋକ ବହୁଦିନଯାଏ କହୁଥିଲେ, ଏଥିଯୋଗୁଁ ମାଆ ଶଶିବାବୁଙ୍କର ନିଶ୍ଚୟ ଅହିତ କରିବେ ।

**ଦଣ୍ଡାସି ଜାତିର ସମସ୍ୟା –**

୧୯୨୩ ମସିହାରେ ବ୍ରିଟିଶ ସରକାର ଦଣ୍ଡାସି ଜାତିକୁ ଗୋଟିଏ ଅପରାଧୀ ଗୋଷ୍ଠୀ ବୋଲି ଘୋଷଣା କରିଥିଲେ । ସରକାରଙ୍କର ଧାରଣା ଥିଲା ଯେ, ଦଣ୍ଡାସିମାନେ ଅନ୍ୟମାନଙ୍କର ଧନ-ସମ୍ପତ୍ତି ଚୋରି କରିବାକୁ ନିଜର ବୃତ୍ତିରୂପେ ଗ୍ରହଣ କରିଛନ୍ତି । ତାହା

ମଧ୍ୟ ସେ ଘୋଷଣାନାମାରେ ସ୍ପଷ୍ଟଭାବରେ ବ୍ୟକ୍ତ କରିଥିଲେ । ଏହାର ପ୍ରତିକ୍ରିୟାରେ ଦଣ୍ଡାସି ଜାତିର କେତେକ ବ୍ୟକ୍ତି ଆନ୍ଦୋଳନ କରିବାକୁ ନିଷ୍ପତ୍ତି ନେଇଥିଲେ । ସେମାନେ ପ୍ରଥମେ ଶଶିବାବୁଙ୍କ ସହିତ ବ୍ରହ୍ମପୁରଠାରେ ଏ ବିଷୟରେ ପରାମର୍ଶ କରିଥିଲେ । ଗଞ୍ଜାମ ଜିଲ୍ଲାରେ ସେତେବେଳକୁ ପ୍ରାୟ ସତୁରି ହଜାର ଦଣ୍ଡାସି ଜାତିର ଲୋକ ବାସକରୁଥିଲେ । ଜାତିର କେତେକ ଲୋକ ଚୋରି କରୁଥିବାରୁ ସମଗ୍ର ଜାତିକୁ ଚୋର ବୋଲି ଘୋଷଣା କରିବା ଗର୍ହିତ କାର୍ଯ୍ୟ ବୋଲି ଶଶିବାବୁ ଉପଲବ୍ଧି କରିଥିଲେ । ଅପରାଧୀମାନଙ୍କୁ ଦଣ୍ଡ ଦେବା ସରକାରଙ୍କର ଉଚିତ । ଶଶିବାବୁ ସାପ୍ତାହିତ ଆଶାରେ ତାଙ୍କର ଏହି ମତ ପ୍ରକାଶ କଲେ ଏବଂ ଦଣ୍ଡାସିମାନଙ୍କୁ ସଂଗଠିତ କରି ଗଠନମୂଳକ କାର୍ଯ୍ୟ କରାଇବାକୁ ସ୍ଥିରକଲେ ।

ସେଥିଯୋଗୁଁ ୧୯୨୪ ମସିହା ମାର୍ଚ୍ଚ ମାସ ୨୧ ତାରିଖରେ ତାରାତାରିଣୀ ପୀଠରେ ଦଣ୍ଡାସି ମହାସଭା ଡକାଗଲା । ସେ ଦିନର ବିଶାଳ ସମାବେଶରେ ଶଶିବାବୁ ଅଧ୍ୟକ୍ଷତା କରି ଦଣ୍ଡାସି କୁଳ ମହାସଂଘ ଗଠନକଲେ । ସମସ୍ତ ଜାତି ନିସ୍ତାର ସହ କେତେଗୋଟି ନିୟମ ପାଳନ କରିବା ପାଇଁ ସଭାରେ ସ୍ଥିର ହେଲା । ନିୟମଗୁଡ଼ିକ ମଧ୍ୟରେ– ସେମାନେ ଚୋରି କରିବେ ନାହିଁ, ଚୋରକୁ କେହି ସାହାଯ୍ୟ କରିବେ ନାହିଁ, ଅଖାଦ୍ୟ ଖାଇବେ ନାହିଁ ପ୍ରଭୃତି ଅନ୍ତର୍ଭୁକ୍ତ ଥିଲା । ଏହିସବୁ ନିୟମ ପାଳନ କରିବା ପାଇଁ ଦଣ୍ଡାସିମାନେ ସାମୂହିକ ଭାବରେ ଶପଥନେଲେ । ଏହାପରେ ସେମାନଙ୍କ ମଧ୍ୟରେ ସଂସ୍କାରବାଦୀ ଜାଗରଣ ଜାତ ହୋଇଥିଲା ।

ଶଶିବାବୁ ସରକାରଙ୍କ ଉପରେ ପ୍ରଭାବ ପକାଇ ଦଣ୍ଡାସିମାନଙ୍କୁ ଗାଁ ଜଗୁଆଳି ଏବଂ କାର୍ଯ୍ୟାକରଣଙ୍କର ଚପରାସି ଆଦି କର୍ମରେ ନିଯୁକ୍ତ କରାଇଥିଲେ । ସେଥିପାଇଁ ସେମାନେ ସରକାରଙ୍କଠାରୁ ଦରମା ପାଇଲେ ଏବଂ ସ୍ଥାୟୀ ଭୋଗ ପାଇଁ ସରକାରଙ୍କଠାରୁ ଚାଷଜମି ପାଇପାରିଥିଲେ । ଉକ୍ତ ଜମିସବୁ ସରକାରୀ ରେକର୍ଡ଼ପତ୍ରରେ 'ଦଣ୍ଡାସି ଇନାମ' ବୋଲି ଦରଜ ହେଲା । ଶଶିବାବୁ ଏଥିପାଇଁ ବହୁ ପରିଶ୍ରମ କରିଥିଲେ । ପ୍ରଥମେ ଶଶିବାବୁ ଦଣ୍ଡାସି-କୁଳର ସଭାପତି ଥିଲେ । ପରେ ତାଙ୍କର ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତତା ହେତୁ, ନିଜ ଭାଇ ଶରତ୍ ଚନ୍ଦ୍ର ମହାପାତ୍ରଙ୍କୁ ସେମାନଙ୍କର ସଭାପତି କରାଇଥିଲେ । ସେ ଶଶିବାବୁଙ୍କ ପରାମର୍ଶରେ କାମକରୁଥିଲେ । ଦଣ୍ଡାସିମାନେ ତାଙ୍କୁ ଜାତିର ତ୍ରାଣକର୍ତ୍ତା ବୋଲି ମନେକରୁଥିଲେ ।

ଶଶିବାବୁ ଦଣ୍ଡାସିକୁଳ ସଂଗଠନ ସହିତ ଜଡ଼ିତ ଥିବାରୁ, ତାଙ୍କର ଆତ୍ମୀୟସ୍ୱଜନ ଏବଂ ବଂଶବର୍ଗ ତାଙ୍କୁ ବାସନ୍ଦ କରି ତାଙ୍କର ଏକମାତ୍ର କନ୍ୟା ଆଶାଲତାର ବିବାହ ଉତ୍ସବରେ ଯୋଗଦେଲେନାହିଁ । ମାତ୍ର ଶଶିବାବୁ ସେଥିପାଇଁ ଭ୍ରୂକ୍ଷେପ କରିନଥିଲେ । ସମାଜ ସଂସ୍କାର ପାଇଁ ସେ ଦଣ୍ଡାସି ଜାତିକୁ ସାହାଯ୍ୟ କରୁଥିଲେ । ମାତ୍ର ସେ ନିଜେ ଜଣେ ନୈଷ୍ଠିକ ହିନ୍ଦୁ ବ୍ରାହ୍ମଣଭାବେ ପୂଜାପାଠ ଏବଂ ଏକାଦଶୀ ବ୍ରତ ଆଦି ପାଳନ କରୁଥିଲେ । ନିଜେ ଏକ ଗୀତା ଓଡ଼ିଆରେ ଅନୁବାଦ କରିଥିଲେ ଏବଂ ପ୍ରତିଦିନ ଗୀତାପାଠ କରୁଥିଲେ । ଶଶିବାବୁଙ୍କ ଗୀତା ନୀଳକଣ୍ଠ ଦାସଙ୍କ ଗୀତାଭାଷ୍ୟ ଏବଂ ଆଚାର୍ଯ୍ୟ ହରିହରଙ୍କ ଗୀତା ପୂର୍ବରୁ ପ୍ରକାଶିତ ଓ ପ୍ରସାରିତ ହୋଇଥିଲା ।

**ଶଶିବାବୁଙ୍କ ପରିବାର ଏବଂ ତାଙ୍କର ଶେଷ ଜୀବନ –**

ଶଶିବାବୁଙ୍କ ପରିବାରରେ ତାଙ୍କ ପତ୍ନୀ ଅନ୍ନପୂର୍ଣ୍ଣା ଏବଂ କନ୍ୟା ଆଶାଲତା ବ୍ୟତୀତ ଆଉ କେହି ନଥିଲେ । ଏହି ପରିବାର ଆଶା ପ୍ରେସ ପରିସରରେ ରହିଥିଲେ । ଶଶିବାବୁ ଝିଅକୁ ଷୋହଳ ବର୍ଷ ବୟସରେ ପାରଳାଖେମୁଣ୍ଡି ନିକଟସ୍ଥ ଚାଉଡ଼ି ଶାସନରେ ଡ଼ାକ୍ତର ବଳଭଦ୍ର ମିଶ୍ରଙ୍କ ସହିତ ବିବାହ ଦେଇଥିଲେ । ବଳଭଦ୍ର ମାନ୍ଦ୍ରାଜରୁ ଏମ୍.ବି., ବି.ଏସ୍. ପାସ କରି ଜିଲ୍ଲା ସ୍ୱାସ୍ଥ୍ୟ ଅଫିସର୍‌ରୂପେ କାର୍ଯ୍ୟକରୁଥିଲେ । ବଳଭଦ୍ରଙ୍କର ପ୍ରଥମ ବିବାହ ପରେ ସ୍ତ୍ରୀ ଅଳ୍ପବର୍ଷରେ ମରିଯାଇଥିଲେ । ଆଶାଲତାଙ୍କର ତିନିପୁଅ ଏବଂ ଦୁଇ ଝିଅ ହୋଇଥିଲେ । ବଡ଼ନାତିକୁ ଶଶିବାବୁ ପୋଷ୍ୟପୁତ୍ର କରିବେ ବୋଲି ଇଚ୍ଛା କରୁଥିଲେ; ମାତ୍ର ଶେଷ ପର୍ଯ୍ୟନ୍ତ ତାହା କରିନଥିଲେ ।

୧୯୩୬ ମସିହାରୁ ଶଶିବାବୁ ସ୍ୱାସ୍ଥ୍ୟହାନି ଏବଂ ପ୍ରେସ୍ ଓ ଆଶା, ନ୍ୟୁ ଓଡ଼ିଶା ଦୁଇ ପତ୍ରିକାରେ ଅର୍ଥାଭାବ ହେତୁ ଅନିୟମିତ ପ୍ରକାଶନରେ ମାନସ୍ତାପରେ କାଳକାଟୁଥିଲେ । ୧୯୩୯ ମସିହାରେ ଓଡ଼ିଶା ସରକାରଙ୍କ ଚିଫ୍ ସେକ୍ରେଟେରୀଙ୍କ ପ୍ରବର୍ତ୍ତନାରେ ପ୍ରେସ ଓ ପତ୍ରିକା ଦୁଇଟିକୁ କଟକକୁ ସ୍ଥାନାନ୍ତରିତ କରିଥିଲେ; ମାତ୍ର ସ୍ୱାସ୍ଥ୍ୟଗତ କାରଣ ଯୋଗୁ ସେ କଟକରେ ରହିପାରୁନଥିଲେ । ସେଥିଯୋଗୁ ପୁନର୍ବାର 'ଶଶିଭୂଷଣ ପ୍ରେସ୍' ନାମରେ ଗୋଟିଏ ଛୋଟ ପ୍ରେସ ସ୍ଥାପନ କରି ସାପ୍ତାହିକ ଆଶାକୁ ବ୍ରହ୍ମପୁରଠାରୁ ପ୍ରକାଶ କଲେ । ମାତ୍ର ଯୁଦ୍ଧ ସମୟରେ ସରକାରୀ ନୀତି ସମର୍ଥନ କରୁଥିବାରୁ ଦୈନିକ ଆଶା ଓ ନ୍ୟୁ ଓଡ଼ିଶା କଟକରେ ବହୁଳ ଭାବରେ ବିକ୍ରି ହେଉନଥିଲା । ବ୍ରହ୍ମପୁରଠାରେ ମଧ୍ୟ ସାପ୍ତାହିକ ଆଶା ସଫଳ ହୋଇନଥିଲା । ୧୯୪୨ ମସିହାରେ ବ୍ରିଟିଶ ସରକାର ତାଙ୍କୁ O.B.E. ଉପାଧି ଦେବାକୁ ପ୍ରସ୍ତାବ କରିଥିଲେ; ମାତ୍ର ସେ ତାହା ପ୍ରତ୍ୟାଖ୍ୟାନ କରିଥିଲେ ।

୧୯୪୩ ମସିହାର ପ୍ରାରମ୍ଭରେ ତାଙ୍କର ସ୍ୱାସ୍ଥ୍ୟର ଅବସ୍ଥା ଅଧିକ ଖରାପ ହେଲା । ବହୁବର୍ଷ ଆଗରୁ ସେ ହାର୍ନିଆ ରୋଗରେ ପୀଡ଼ିତ ଥିଲେ । ୧୯୪୩ ମସିହା ମାର୍ଚ୍ଚ ମାସରେ ଶିବରାତ୍ରି ଉପଲକ୍ଷେ ଅନ୍ନପୂର୍ଣ୍ଣା ଦେବୀ ପୁରୀ ଗଲେ । ସ୍ୱାସ୍ଥ୍ୟ ଭଲନଥିବାରୁ ଶଶିବାବୁ ତାଙ୍କ ସହିତ ଯାଇପାରିନଥିଲେ । ୧୯୪୩ ମସିହା ମାର୍ଚ୍ଚ ମାସ ୧୮ ତାରିଖରେ ଅନ୍ନପୂର୍ଣ୍ଣା ଦେବୀ ପୁରୀରୁ ଫେରିଲାବେଳକୁ ଶଶିବାବୁଙ୍କ ଦେହ ଅତ୍ୟନ୍ତ ଖରାପ ହୋଇଥିଲା । ସେ କଥା କହିପାରୁନଥିଲେ କିମ୍ବା ବିଛଣାରୁ ଉଠିପାରୁନଥିଲେ । ପରଦିନ ୧୯୪୩ ମସିହା ମାର୍ଚ୍ଚ ମାସ ୧୯ ତାରିଖ ରାତି ଦୁଇଟାବେଳେ ବ୍ରହ୍ମପୁର ହନୁମାନ୍ ମନ୍ଦିର ନିକଟସ୍ଥ ଶଶିଧାମରେ ସେ ଶେଷ ନିଶ୍ୱାସ ତ୍ୟାଗକଲେ । ୨୦ ତାରିଖ ଦିନ ସକାଳ ୭ଟା ବେଳେ ବିରାଟ ଜନତାର ପଟୁଆରରେ ଶବ-ଶୋଭାଯାତ୍ରା ବ୍ରହ୍ମପୁର ସହରର ପ୍ରଧାନ ପ୍ରଧାନ ରାସ୍ତାଦେଇ ନୀଳକଣ୍ଠେଶ୍ୱର ଶ୍ମଶାନକୁ ନିଆଯାଇଥିଲା । ହଜାର ହଜାର ଶୋକାକୁଳ ଜନତାଙ୍କ ସମ୍ମୁଖରେ ସେହିଠାରେ ତାଙ୍କର ଶେଷ କୃତ୍ୟ ସମ୍ପନ୍ନ ହେଇଥିଲା ।

ଶଶିଭୂଷଣ ରଥ ଜଣେ ଦୃଢ଼ମନା, ସାହସୀ, ସ୍ପଷ୍ଟବାଦୀ ଓ ନୀତିବାନ୍ ବ୍ୟକ୍ତି ଥିଲେ । ଯୁବକ ଅବସ୍ଥାରୁ ଓଡ଼ିଆ ଭାଷା ଏବଂ ଓଡ଼ିଆ ଜାତିର ସ୍ୱାର୍ଥରକ୍ଷା କରିବା ପାଇଁ ଏବଂ ଉତ୍କଳର

ପୂର୍ବ ଗୌରବର ପୁନରୁଦ୍ଧାର ପାଇଁ ସେ ଜୀବନ ଉତ୍ସର୍ଗ କରିଥିଲେ । ସାଂବାଦିକତା ଏବଂ ସଂବାଦପତ୍ର ସମ୍ପାଦନା ମାଧ୍ୟମରେ ଦେଶସେବା କରିବାକୁ ସେ ସ୍ଥିରକରିଥିଲେ ଏବଂ ଶେଷ ଜୀବନ ପର୍ଯ୍ୟନ୍ତ ସେ ଲକ୍ଷ୍ୟରୁ ବିଚ୍ୟୁତ ହୋଇନଥିଲେ । ସଂବାଦପତ୍ର ସଂପାଦନାରେ ଅନ୍ୟମାନଙ୍କ ମତ ପ୍ରକାଶ କରିବାରେ ସେ ନିଷ୍ଠା ପ୍ରଦର୍ଶନ କରୁଥିଲେ ଏବଂ ନିର୍ଭୟରେ ନିଜ ମତ ପ୍ରକାଶକରୁଥିଲେ । ତାଙ୍କ ଉଦ୍ୟମରେ ଓଡ଼ିଶାରେ ସର୍ବପ୍ରଥମ ଦୈନିକ ସଂବାଦପତ୍ର ପ୍ରକାଶପାଇଥିଲା ଏବଂ ସାଂବାଦିକତା କ୍ଷେତ୍ରରେ ସେ ସର୍ବଦା ଉଚ୍ଚ ଆଦର୍ଶ ପ୍ରଦର୍ଶନ କରିଛନ୍ତି । ବିଂଶ ଶତାବ୍ଦୀରେ ଓଡ଼ିଆ ଜାତିର ଏକତ୍ରୀକରଣ ଏବଂ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ତାଙ୍କର ଅବଦାନ ଅବିସ୍ମରଣୀୟ । ଓଡ଼ିଶାର ସାଂସ୍କୃତିକ ଏବଂ ରାଜନୈତିକ ଇତିହାସରେ ସେ ଅତି ଉଚ୍ଚ ସ୍ଥାନ ଅଧିକାର କରିଛନ୍ତି ।



**ସହାୟକ ପୁସ୍ତକ —**

ଓଡ଼ିଆପ୍ରାଣ ଶଶିଭୂଷଣ ରଥ
— ପଦ୍ମଚରଣ ସାହୁ, ଆଶା ପୁସ୍ତକାଳୟ

(ଏ ପ୍ରବନ୍ଧର ଅଧିକାଂଶ ତଥ୍ୟ ଉକ୍ତ ପୁସ୍ତକରୁ ସଂଗୃହୀତ ହୋଇଛି) ।

# ପରିଶିଷ୍ଟ

'ଜାତିନିର୍ମାତା' ପୁସ୍ତକର ତିନିଭାଗରେ ଆଲୋଚିତ ଓଡ଼ିଶାର ବରପୁତ୍ରମାନଙ୍କର ଜୀବନକାଳ

| ନାମ | ଜନ୍ମତାରିଖ | ମୃତ୍ୟୁତାରିଖ |
|---|---|---|
| ୧. ଗୌରୀଶଙ୍କର ରାୟ | ଜାନୁଆରୀ ୧୮୩୮ | ୭.୩.୧୯୧୭ |
| ୨. ଫକୀରମୋହନ ସେନାପତି | ଜାନୁଆରୀ ୧୮୪୩ (ମକର ସଂକ୍ରାନ୍ତି) | ୧୪.୬.୧୯୧୮ |
| ୩. ମଧୁସୂଦନ ଦାସ | ୨୮.୪.୧୮୪୮ | ୪.୨.୧୯୩୪ |
| ୪. ରାଧାନାଥ ରାୟ | ୨୮.୯.୧୮୪୮ | ୧୮.୪.୧୯୦୮ |
| ୫. ବାସୁଦେବ ସୁଢ଼ଳ ଦେବ | ୧୬.୫.୧୮୫୦ | ୧୯.୧୧.୧୯୦୩ |
| ୬. ଗଙ୍ଗାଧର ମେହେର | ୯.୮.୧୮୬୨ (ଶ୍ରାବଣ ପୂର୍ଣ୍ଣିମା) | ୪.୪.୧୯୨୪ |
| ୭. ନୀଳମଣି ବିଦ୍ୟାରତ୍ନ | ୧୪.୧୨.୧୮୬୭ | ୨୬.୭.୧୯୨୪ |
| ୮. ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓ | ୧୭.୧୨.୧୮୭୧ | ୨୨.୨.୧୯୧୨ |
| ୯. ଗୋପାଳ ଚନ୍ଦ୍ର ପ୍ରହରାଜ | ୨୭.୯.୧୮୭୪ | ୧୬.୫.୧୯୪୫ |
| ୧୦. ଗୋପବନ୍ଧୁ ଦାସ | ୯.୧୦.୧୮୭୭ | ୧୭.୬.୧୯୨୮ |
| ୧୧. ଆଚାର୍ଯ୍ୟ ହରିହର ଦାସ | ୨୭.୨.୧୮୭୯ | ୨୧.୨.୧୯୭୧ |
| ୧୨. ନୀଳକଣ୍ଠ ଦାସ | ୫.୮.୧୮୮୪ | ୬.୧୧.୧୯୬୭ |
| ୧୩. ଶଶିଭୂଷଣ ରଥ | ୧.୧.୧୮୮୫ | ୧୯.୩.୧୯୪୩ |
| ୧୪. ଗୋଦାବରୀଶ ମିଶ୍ର | ୨୬.୧୦.୧୮୮୬ | ୨୬.୭.୧୯୫୬ |
| ୧୫. କୃଷ୍ଣଚନ୍ଦ୍ର ଗଜପତି ନାରାୟଣଦେବ | ୨୯.୪.୧୮୯୨ | ୨୫.୫.୧୯୭୪ |
| ୧୬. ହରେକୃଷ୍ଣ ମହତାବ | ୨୧.୧୧.୧୮୯୯ | ୨.୧.୧୯୮୭ |